ଆମ ଦେହ ପାଇଁ

# ପଞ୍ଚାମୃତ



ଖୁସିରେ ପଢିବା ଅଭିଯାନ

ଭାରତ ଜ୍ଞାନ ବିଜ୍ଞାନ ସମିତି

ଆମ ଦେହ ପାଇଁ ପଞ୍ଚାମୃତ

ରଚନା : ବିନୟକୃଷ୍ଣ ପଟ୍ଟନାୟକ
ଅଙ୍କନ : ଗୌରୀ ଶଙ୍କର ବେହେରା

ପ୍ରକାଶକ : ଭାରତ ଜ୍ଞାନ ବିଜ୍ଞାନ ସମିତି,
ସି - ୨, ହାଉସିଂ ବୋର୍ଡ୍ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩
ଫୋନ୍ : (୦୬୭୪) ୪୭୦୮୯୧
ଅକ୍ଷରସଜ୍ଜା : ଓରିଜନ୍ କମ୍ପ୍ୟୁଟରସ୍, ଭୁବନେଶ୍ୱର ।
ମୁଦ୍ରଣ :
ସହଯୋଗ ରାଶି : ତିନି ଟଙ୍କା ମାତ୍ର
ପ୍ରକାଶ କାଳ : ଜାନୁଆରୀ ପହିଲା, ୧୯୯୭

ଏହି ପୁସ୍ତିକାଟି "ଖୁସିରେ ପଢିବା ଅଭିଯାନ" (Jan Vachan Andolan) ପାଇଁ ପ୍ରସ୍ତୁତ କରାଯାଇଛି । ଓଡିଶାର ଗାଁ ଗହଳିରେ ଲୋକଙ୍କର ପଠନ ରୁଚିକୁ ତେଜିବା ସାଙ୍ଗକୁ ଏକ ପାଠାଗାର ଆନ୍ଦୋଳନ ଚଳାଇବା ପାଇଁ ସମିତି ତରଫରୁ ଏହା ଏକ ଦେଶବ୍ୟାପୀ ଉଦ୍ୟମ ।

• Panchamruta for our Body • Author - Binaya Krushna Pattanayak. • Illustration - Gouri Shankar Behera • Published by B.G.V.S., Orissa for Jan Vachan Andolan • Price - Rs.3.00 • Publication Period - 1st January 1997

କାଲିଠୁଁ ଖରାଛୁଟି ଆରମ୍ଭ ହେବ । ସ୍କୁଲ ଛୁଟି ହୋଇଯିବ । ସ୍କୁଲର ଚାରିକାନ୍ଥ ଭିତରେ ବାନ୍ଧି ହୋଇ ଖାଲି କଳାପଟା, ବହି, ଖାତା, ଆଦିକୁ ଦେଖିବା କିଛି ଦିନ ପାଇଁ ବନ୍ଦ । ଯାହାର ଯେଉଁଥିରେ ଆଗ୍ରହ ସେ ତାହା କରି ପାରିବ । ପରୀକ୍ଷା ବି ତ' ସରି ଯାଇଛି । ତେଣୁ ଘରେ ବି କଟକଣା କମ୍ ରହିବ । କିନ୍ତୁ ଗୋଟିଏ କଥା ବାଧୁଛି । ତା'ହେଲା ସାଙ୍ଗ ସାଥିଙ୍କ ଠାରୁ ଦୂରରେ ରହିବା । ଛୁଟିରେ ଶୁଖିଲା ପାଠପଢ଼ା ବଦଳରେ ଯଦି ଆଉ କିଛି କରାଯାଆନ୍ତା ! କେତେ ମଜା ହୁଅନ୍ତା ! ସ୍କୁଲରେ ଅଧାଘଣ୍ଟା ଖାଇ ଛୁଟିରେ ବି ସାଙ୍ଗ ସାଥି ମିଶି ଯାଇ କେତେ ମଉଜ କରନ୍ତି । ଛୁଟିରେ ସମସ୍ତେ ଏକାଠି ରହି କିଛି କରିବାର ସୁଯୋଗ ପାଆନ୍ତେ କି ?

ଯୋଗକୁ ଚିତ୍ତ ଗୁରୁଜୀ ଏମିତିକା ପ୍ରସ୍ତାବଟିଏ ହିଁ ଦେଲେ । '' ଏଥର ଛୁଟିରେ ଆମେ ସମସ୍ତେ ମିଶି ଏକ ନୂଆ ଜାଗାକୁ ବୁଲିଯିବା ? ''

'' ହଁ.....ଅଁ.....ହଁ.....ହଁ.....ହଁ.....ହଁ.....'' ଭୋକିଲା ଲୋକଙ୍କ ଆଗରେ ହଠାତ୍ ଆକାଶରୁ ରସଗୋଲା ବସ୍ତାଟିଏ ଖସି ପଡିଲା କି ଆଉ ? ଏପରି ଆକସ୍ମିକ ମନଛୁଆଁ ଖବରଟି ଶୁଣି ପିଲା ଦଳଟି ଗଡ଼ ଜିଣିଲା ପରି ଉତ୍ସାହରେ ଡେଇଁବାରେ ଲାଗିଲେ । କୁଆଡେ ଯିବେ, କେତେଜଣ ଯିବେ, କିପରି ଯିବେ- ସବୁ ବିଷୟରେ ଆଲୋଚନା ହେଲା । ଶେଷରେ ଠିକ୍ ହେଲା ଯେ ଝିଅ ପୁଅ ମିଶି ୧୩ ଜଣ ନନ୍ଦନକାନନ ଚିଡିଆଖାନା ଦେଖିବାକୁ ଯିବେ ।

ପିଲାଙ୍କ ଖୁସି କହିଲେ ନ ସରେ । ପ୍ରବଳ ଉତ୍ସାହ ସହ ସମସ୍ତେ ବାହାରିଲେ । ତା'ପରଦିନ ସକାଳେ ସେମାନେ ସ୍କୁଲ ପରିସରରେ ଏକାଠି ହେଲେ । ପିଲାଙ୍କର ସାଙ୍ଗ ଚିତ୍ତ ଗୁରୁଜୀ ଦଳଟିକୁ ବୁଲାଇ ନେଇଥିବାରୁ କାହାଘରେ ବି କିଛି କହିବାର ନ ଥିଲା । ବସ୍ ଚଢି ସେମାନେ ନନ୍ଦନ କାନନ ଚାଲିଲେ । ଖୁସିରେ ପିଲାଏ ଉଲୁସି ଉଠିଥାନ୍ତି । ବରଷାର ଆରମ୍ଭରେ ଗଛ ଲତା ସବୁ ଯେପରି ସବୁଜ, ସତେଜ ଓ ପଲ୍ଲବିତ ହୋଇ ଉଠନ୍ତି, ପିଲାଏ ସେପରି ଲାଗୁଥାନ୍ତି । ଗାଡି ଭିତରେ ପାଖକୁ ପାଖ ଜାକିଜୁକି ହୋଇ ବସି କେତେ ଗୀତ ଗପ ଚଲାଇଥାନ୍ତି । ଗୁରୁଜୀ ବି ସେମାନଙ୍କ ସହ ତାଳ ଦେଇ ତାଙ୍କର ଖୁସିକୁ ତେଜି ଦେଉଥାନ୍ତି ।



ନନ୍ଦନକାନନରେ ସମସ୍ତେ ଓହ୍ଲାଇଲେ । ଟିକଟ କରି ଚିଡିଆଖାନା ବୁଲିଲେ । ବିବିଧ ଜୀବ ଜନ୍ତୁଙ୍କୁ ଦେଖି ସେମାନଙ୍କ ହାବଭାବକୁ ସେମାନେ ମନ ଭରି ଦେଖି ଯାଉଥାନ୍ତି । କେଉଁଠି ବିରାଟକାୟ କାଳିଆ ଭାଲୁଟାଏ ପିଲାଙ୍କୁ ଦେଖି ଖୁସିରେ ଦୁଇ ଗୋଡରେ ଠିଆ ହୋଇ ହାତ ହଲାଉଥାଏ ତ କେଉଁଠି ମୟୂର ପୁଚ୍ଛ ଟେକି ଏଣେତାଏ ନାଚି ଯାଉଥାଏ । ଜାପାନୀ ମାଙ୍କଡ ଡାଳରୁ ଡାଳ ଡେଇଁ କେତେ କସରତ ଦେଖାଉଥାଏ । ଧଳା ବାଘ ଲୁହା ଜାଲ ପାଖକୁ ଆସି ଲାଙ୍ଗୁଡ ହଲାଉଥାଏ ।

ଦେଶ ବିଦେଶର ରଙ୍ଗୀନ ଶୁଆଗୁଡିକ ପିଲାଙ୍କ ପାଇଁ କଥା କହିବା ସାଙ୍ଗକୁ ଗୀତ ବି ଗାଉଥାନ୍ତି । ଚିନ ଗନ୍ଧୁଙ୍କା ମଝିରେ ମଝିରେ ଏହି ପଶୁ ପକ୍ଷୀଙ୍କ ବିଷୟରେ ଆଉ ଦୁଇ ଚାରି ଧାଡି ଲେଖାଏଁ ଯୋଡି ଦେଉଥାନ୍ତି । ପିଲାଙ୍କ ହସ, ଖୁସି ଦେଖି ଜଙ୍ଗଲି ପଶୁ ପକ୍ଷୀ ଗୁଡାକ ବି ଖୁସିରେ ନାଚି ଗାଇ ଦେଉଁଥାନ୍ତି । ମନେ ହେଉଥାଏ ଯେପରି ଆଜି ଏହି କୃତ୍ରିମ ଜଙ୍ଗଲଠାରେ ଏକ ଖୁସି ଉତ୍ସବ ଚାଲିଛି ।

ଏହି ପଶୁ ପକ୍ଷୀଙ୍କୁ ଦେଖି ପିଲାଙ୍କର କେତେ କଥା ମନେ ପଡି ଯାଉଥାଏ - ଗପ, ଗୀତ, ସିନେମା, ..... । ଭାଲୁ ଗପ, ହାତୀ ଗପ, ସିଂହ ବିଲୁଆ କଥା, ଠେକୁଆ କଇଁଚ ଗପ, ବଗ ବିଲୁଆ ଗପ, ଏମିତି ଦେଶ ବିଦେଶର କେତେ ଗପ ।

ମୟୂରକୁ ଦେଖି ସେମାନେ ଗାଉଥାନ୍ତି " କଳା ମେଘ ଦେଖି ନାଚେ ମୟୂର, ପୁଚ୍ଛ ଦିଶେ ତା'ର କି ମନୋହର । " ଠେକୁଆକୁ ଦେଖି ଗାଉଥାନ୍ତି " ଥିଲା ଏକ ଠେକୁଆ, ନା'ଟା ତା'ର ଭକୁଆ, କାନ ଦି'ଟା ଗୋଜିଆ, .... । "

କୋଇଲିକୁ ଦେଖି ଗାଉଥାନ୍ତି, " କାଉ ତ କଳା, କୋଇଲି କଳା, କଳା କଜଳପାତି .... । " ସମସ୍ତେ ମିଶି ଗାଉଥାନ୍ତି, ତାଳି ମାରୁଥାନ୍ତି । ବାଘକୁ ଦେଖି କିଏ କହୁଥାଏ, " ଆରେ ଶୁଣ ଶୁଣ ..... ତୁମର ମୋଗଲିର ଗପ ମନେ ଅଛିଟି ?" ତା ପରେ ଆରମ୍ଭ ହୋଇଯାଏ ମୋଗଲିର ଜଙ୍ଗଲି କାହାଣୀ, ପଶୁପକ୍ଷୀ ସାଙ୍ଗ, ବିପଦ ବେଳେ ସାହାଯ୍ୟ । " ଆଉ ଟାର୍ଜନ୍ ? " ସମସ୍ତେ ପୁଣି ଟାର୍ଜନର ଜଙ୍ଗଲ କାହାଣୀ ଗପି ଚାଲିନ୍ତି । ଏମିତି ତାଙ୍କର ସ୍ମୃତି ଓ କଳ୍ପନାର ଧାଡି ଲମ୍ବି ଚାଲିଥାଏ । ମଉଜର ସୀମା ନ ଥାଏ ।

ଖରା ବେଳ ହେଲା । ଖାଇବାକୁ ସମସ୍ତେ ବସିଗଲେ । ଗୁରୁଜୀଙ୍କୁ ଘେରି ବସି ଯାଇଥାନ୍ତି । ନୂଆ ନୂଆ ପଶୁ ପକ୍ଷୀଗୁଡାକ ତାଙ୍କୁ ଏତେ ଭଲ ଲାଗିଥାଏ ଯେ, ସେମାନେ ପ୍ରଶ୍ନ ପରେ ପ୍ରଶ୍ନ ପଚାରି ଚାଲିଥାନ୍ତି । ଗୁରୁଜୀ ବି ବୁଝାଇ ଚାଲିଥାନ୍ତି । କିନ୍ତୁ ତାଙ୍କୁ ବି ତ ସବୁ କଥା ଜଣା ନ ଥାଏ । ସେ ତାଙ୍କୁ ନେଇ ଚିଡିଆଖାନାର ପରିଚାଳକଙ୍କ ପାଖକୁ ଗଲେ । ରବିବାବୁ ଚିତ୍ତ ଗୁରୁଜୀଙ୍କୁ ଆଗରୁ ଚିହ୍ନି ଥାନ୍ତି । ସେ ଓ ତାଙ୍କର ସାଥିମାନେ ପିଲାଙ୍କ ସହ ଗପିଲେ । ପିଲାଙ୍କର କିଛି ପ୍ରଶ୍ନର ଉତ୍ତର ସେମାନେ ଜାଣିଥାନ୍ତି । ସେଗୁଡିକୁ ସେମାନେ ବୁଝାଉ ଦେଉଥାନ୍ତି ।

କିନ୍ତୁ ପ୍ରାଥମିକ ଶ୍ରେଣୀର ଛୁଆଙ୍କୁ ବୁଝାଇବା ପାଇଁ ତାଙ୍କୁ ଯଥେଷ୍ଟ ଭାବିଚିନ୍ତି ସରଳ ଭାଷାରେ କହିବାକୁ ପଡୁଥାଏ । ଅନେକ ପ୍ରଶ୍ନ ତାଙ୍କ ପାଇଁ ବି ନୂଆ ଲାଗୁଥାଏ । ପିଲାଏ ଯେ ଏପରିକା ଗଭୀର ପ୍ରଶ୍ନ ପଚାରି ପାରନ୍ତି ତାହା ତାଙ୍କ ଆଶାଠୁଁ ବାହାରେ ଥିଲା । ସେମାନଙ୍କୁ ଯଥେଷ୍ଟ ଭାବି ବୁଝାଇବାକୁ ପଡୁଥିଲା । କେତେକ ପ୍ରଶ୍ନର ଉତ୍ତର ସେମାନେ ବି ଜାଣି ନ ଥିଲେ । ତେଣୁ " ଆମେ ଜାଣି ନାହୁଁ " ବୋଲି ଜଣାଇଲେ । ତାଙ୍କ ସାଥୀମାନଙ୍କ ଭଦ୍ରାମୀ ଓ ନମ୍ର ଆଚରଣ ପାଇଁ ରବିବାବୁ ବେଶ୍ ଖୁସି ହେଉଥାନ୍ତି ।

କିଛି ସମୟ ପରେ ବି ପ୍ରଶ୍ନ ସରିଲା ନାହିଁ । ରବିବାବୁ ଏଥର ଜୋର୍‌ରେ ହସି ଉଠିଲେ । କହିଲେ, " ସାବାସ୍.... ସାବାସ୍.... ତୁମେମାନେ ଯେତେ ପ୍ରଶ୍ନ



ପଚାରୁଛ ଓ ଜାଣିବାକୁ ଚାହୁଁଛ ତାହା ଦେଖି ମୋତେ ବହୁତ ଖୁସି ଲାଗୁଛି । ତୁମେ ଏପରି ଖୋଜି ଚାଲିଲେ ଜଣେ ଜଣେ ବିଜ୍ଞାନୀ ହୋଇ ପାରିବ । କିନ୍ତୁ ଖାଲି ପଚାରିଲେ ହେବ ନାହିଁ । କେହି ବି ତୁମର ସବୁ ପ୍ରଶ୍ନର ଉତ୍ତର ଦେଇ ପାରିବେ ନାହିଁ । କେତେକ କଥା ତୁମେ ବହି ପଢି ଜାଣି ପାରିବ । କିଛି କଥା ତୁମେ ପଚାରି ଉଚାରି ଜାଣି ପାରିବ । କିନ୍ତୁ ଏକ ସଠିକ୍ ଧାରଣା ପାଇଁ ତୁମକୁ ବେଶୀ ନିଜେ ଭାବିବାକୁ ପଡିବ । ''

'' ନିଜକୁ ନିଜେ ଲଗାତାର ପଚାରିବାକୁ ପଡିବ - ଏଇଟା କ'ଣ, କେଉଁଠୁ ଆସିଲା । କିପରି ହେଲା ? ଅନ୍ୟ ଜିନିଷ ସହିତ ଏହାର ସମ୍ପର୍କ କ'ଣ, ଏଥିରେ କ'ଣ ହେଲା, କରିହେବ, ..... ଏମିତି ଅନେକ ପ୍ରଶ୍ନ । ଏଥିପାଇଁ ତୁମକୁ ତୁମର ଆଖି, ନାକ, କାନ, ମନକୁ ଖୋଲା ରଖିବାକୁ ପଡିବ । ହାତକୁ କାମରେ ଲଗାଇ ବାକୁ ପଡିବ ଓ ନୂଆ ଧାରଣା ନେଇ ବଦଳିବାକୁ ପଡିବ । ତା' କଲେ ତୁମେ ସାରା ଦୁନିଆଁକୁ ବୁଝି ପାରିବ .....

ଏହି ମନଛୁଆଁ କଥାଗୁଡିକ ଶୁଣି ପିଲାଙ୍କ ମନ ଖୋସି ହୋଇ ଯାଉଥାଏ । ସେମାନେ ନିଜକୁ ଜଣେ ଜଣେ ବିଜ୍ଞାନୀ ମନେ କରୁଥାନ୍ତି । ରବିବାବୁ

ପଚାରିଲେ, " ଏଠାକାର ପଶୁ, ପକ୍ଷୀ ସାଙ୍ଗମାନେ ତୁମକୁ କିପରି ଲାଗିଲେ ? " ପିଲାଏ 'ସାଙ୍ଗ' ଶବ୍ଦଟି ଶୁଣି ଖୁସିରେ କହି ଚାଲିଲେ, " ମୁଁ ମାଙ୍କଡର ସାଙ୍ଗ । " 'ମୁଁ ହାତୀର ସାଙ୍ଗ', କିଏ କହିଲା, " ମୁଁ ମୟୂରର ସାଙ୍ଗ; " ଆଉ କିଏ କହିଲା, " ବାଘ, ଭାଲୁ, ବିଲେଇ, ସାପ । " ରବିବାବୁ ହସିବାରେ ଲାଗିଲେ । କହିଲେ- " ଆଚ୍ଛା ! ତୁମେ ତାଙ୍କ ସାଙ୍ଗରେ ରହିବ ? " ସମସ୍ତେ ପରସ୍ପରର ମୁହଁକୁ ଚାହିଁଲେ । ଏପରି ବ୍ୟବସ୍ଥା ଥିବ ଭାବି ସମସ୍ତେ ଖୁସି ହୋଇଗଲେ ଓ ଏକ ସ୍ୱରରେ କହିଲେ " ହଁ..... । "

ରବିବାବୁଙ୍କ କହିବା ଅନୁସାରେ ସମସ୍ତେ ନିଜ ନିଜ ସାଙ୍ଗଙ୍କୁ ବାଛି ନେଲେ । ଠିକ୍ ହେଲା ଯେ ପିଲାମାନେ ତାଙ୍କ ମନ ପସନ୍ଦର ପଶୁ ପକ୍ଷୀଙ୍କ ସହିତ ସପ୍ତାହେ ଏକାଠି କଟାଇବେ । ଗୁରୁଜୀ ବି ଜଣେ ସାଙ୍ଗ ରୂପେ ଅଜଗର ସାପକୁ ବାଛିଲେ । ଏଥର ସମସ୍ତେ ସାଙ୍ଗମାନଙ୍କ ଜନ୍ତା ଘରେ ପଶିଲେ । ତବୁ ଗଲା କୋକିଶିଆଳୀ ବସାକୁ, ମାମୀ ଗଲା ମୟୂର ଦଳ ପାଖକୁ, ରମେଶ ଧଳାବାଘ, ସେବତୀ ଶୁଆ ; ଟୁନା ଭାଲୁ, ନଟ ଜିରାଫ୍, ମିନି ସିଂହ, ଚମ୍ପି ପେଚା, ଜୟ ହାତୀ, ବାବୁଲି ଠେକୁଆ, ମଞ୍ଜୁ କଇଁଚ ଓ ନୀନା କୁମ୍ଭୀର ବସାକୁ ।

ପଶୁ ପକ୍ଷୀଗୁଡାକ ସ୍ୱପ୍ନରେ ବି ଭାବି ନ ଥିଲେ ଯେ ଏପରି ଏକ ସୁଯୋଗ କେବେ ମିଳିପାରେ । ସେମାନଙ୍କୁ ସବୁବେଳେ ଜନ୍ତା ଭିତରେ ମୁହଁ ଶୁଖାଇ ବସିବାକୁ ପଡୁଥିଲା । ସବୁ ବେଳେ ଲୋକ ହାଉଜାଉ, କିଏ ଗୋଡି ଫିଙ୍ଗିଲାଣି, ତ କିଏ ପାଟି କଲାଣି । ସେମାନେ ଅତି ମନ ଦୁଃଖରେ ଦିନ କାଟୁଥିଲେ । ହସୁକୁରା ପିଲାଙ୍କୁ ଦେଖି ସେମାନେ ଖୁସିରେ ଉଲୁସି ଉଠିଲେ ।

ସେମାନଙ୍କୁ ହାତ ପା'ନ୍ତାରେ ପାଇବାଟା ପିଲାଙ୍କର ସ୍ୱପ୍ନରୁ ବି ଅଧିକା ଥିଲା । ଚିତ୍ତ ଗୁରୁଜୀଙ୍କର ବି ଏକା ଅନୁଭୂତି । ସମସ୍ତେ ମନ ଖୁସିରେ ମିଶିବାରେ ଲାଗିଲେ । ପିଲାମାନେ ଯିଏ ଯାହା ମିତ ସହିତ ଗପିବାରେ ଲାଗିଲେ । ସେମାନେ ବହିରେ ପଢିବା କାହାଣୀ ଠାରୁ ଏମାନଙ୍କର ମୁହଁକୁ ଶୁଣିବା କଥାଗୁଡିକ ଯଥେଷ୍ଟ ଅଧିକ ମନ ଛୁଆଁ ଥିଲା । ସେମାନେ କିପରି ନିଜ ନିଜ ପରିବାର ସହ ଜଙ୍ଗଲରେ ରହୁଥିଲେ, କ'ଣ ଖାଉଥିଲେ, କୁଆଡେ ବୁଲୁଥିଲେ, କ'ଣ କ'ଣ ଦେଖୁଥିଲେ, ମଉଜ କରୁଥିଲେ..... ଏମିତି କେତେ କଥା । ମଣିଷ ସିନା ମନରୁ ଯୋଡି, ଭାବି ବା ଅନୁଭୂତିକୁ ମିଶାଇ ଜଙ୍ଗଲ କାହାଣୀ ଲେଖେ । କିନ୍ତୁ ଏମାନେ ତ ଜଙ୍ଗଲର ନାୟକ



ନାୟିକା । ତାଙ୍କ ପାଟିରୁ ପିଠିରେ ବସି ଏଣେ ତେଣେ ବୁଲୁ ବୁଲୁ ଦୁଃଖ ସୁଖ ହେଉଥାଏ ତ କିଏ ବାଘ ସାମନାରେ ଭୂଇଁ ଉପରେ ଶୋଇ ଗାଲରେ ହାତ ଭରା ଦେଇ ଶୁଣୁଥାଏ । କିଏ ମୟୂର ସାଥିରେ ନାଚିବା ବେଳେ ଗୀତ ଗାଉଥାଏ ତ କିଏ ଭାଲୁର ନରମ ଲୋମ ଥିବା କୋଳରେ ବସି ଖୁସିରେ କାହାଣୀ ଶୁଣୁଥାଏ । କିଏ ମାଙ୍କଡ ସାଥିରେ ଡାଳକୁ ଡାଳ ଡେଇଁ ଫଳ, କୋଳି ଆଦି ଖାଉଥାଏ ।

ପିଲାମାନେ ତାଙ୍କ ଘର, ସ୍କୁଲ, ସାଙ୍ଗ, ସାଥି, ଗପ ବହି, ଗୀତ ଆଦି ବିଷୟରେ ଶୁଣାଉଥାନ୍ତି । ମୋଗଲି ଓ ଟାର୍ଜନ୍‌ର କାହାଣୀ ଶୁଣି ପଶୁ ପକ୍ଷୀମାନେ ବି ଖୁସି ହୋଇ ଯାଉ ଥାଆନ୍ତି । ଏମିତିକା ସମସ୍ତେ ଏକ ନୂଆଁ ଦୁନିଆଁର ହସ ଖୁସିର ମଉଜରେ ବୁଡି ରହିଲେ । 'ଯେ ଦେଶେ ଯାଇ, ସେ ଫଳ ଖାଇ' ନିୟମରେ ସମସ୍ତେ ନିଜ ସାଙ୍ଗଙ୍କ ଭଳି ଖାଇ, ପିଇ, ଶୋଇ, ଖେଳି ମଜା ଚଳାଇଥାନ୍ତି ।

ଦେଖୁ ଦେଖୁ ସାତ ଦିନ କୁଆଡେ ବିତିଗଲା ଜଣା ପଡିଲା ନାହିଁ । ଆଗର କଥା ଅନୁସାରେ ବିଦାୟର ସମୟ ଆସିଗଲା । କେହି କାହାକୁ ଛାଡିବାକୁ ନାରାଜ । ସମସ୍ତଙ୍କ ଆଖିରେ ଲୁହ । କିନ୍ତୁ ଏପରି ତ ସବୁଦିନ ସେମାନେ ସେଠାରେ ରହି ପାରିବେ ନାହିଁ । ଘରେ କାହାର କ'ଣ କାମ । ତେଣୁ ବାଧ ହୋଇ ଲୁହ ପୋଛି

ପୋଛି ଜନ୍ତା ଛାଡିଲେ । ପଶୁ ପକ୍ଷୀମାନେ ଜନ୍ତା ବାଡରୁ ଧରି କେତେ କାନ୍ଦିଲେ । ଅନେକ ବେଳ ଯାଏଁ ଅନାଇ ରହିଲେ ।

ଘରକୁ ଫେରିବା ଯାଏଁ ପିଲା ଓ ଗୁରୁଜୀଙ୍କର ପାଟି ଜମା ବନ୍ଦ ହେଲା ନାହିଁ । କେତେ ଯେ ଚମତ୍କାର ଅନୁଭୂତି ! ଏତିକି ସମୟରେ ବା ସରିବ କେମିତି ? ଠିକ୍ କରାଗଲା ଯେ ସମସ୍ତେ ନିଜ ନିଜ ଅନୁଭୂତିକୁ ଛୁଟିରେ ବସି ଲେଖିବେ । ସ୍କୁଲ ଖୋଲିଲେ ଏହାକୁ ପଢି ଅନ୍ୟ ଶ୍ରେଣୀର ସାଙ୍ଗମାନଙ୍କୁ ଶୁଣାଇବେ ଓ ସ୍କୁଲ ପତ୍ରିକାରେ ବାହାର କରିବେ । ଏହା ଜାଣି ଅନ୍ୟ ସାଙ୍ଗମାନେ ମଧ୍ୟ ଏପରିକା ନୂଆ ନୂଆ କାମ କରିବାକୁ ବାହାରିବେ । ଗାଁରେ ସମସ୍ତେ ପହଞ୍ଚିଲେ । ପରସ୍ପରକୁ ବିଦାୟ ଜଣାଇଲେ । ଗୁରୁଜୀଙ୍କୁ ଏକ ବଡ଼ ଧନ୍ୟବାଦ ଜଣାଇଲେ ଓ ଯିଏ ଯାହା ଘରକୁ ଚାଲିଲେ ।

ସମସ୍ତଙ୍କ ଘରେ ଅନୁଭୂତି ପେଟି ଖୋଲିବା ଆରମ୍ଭ ହେଲା । ଏପରିକା ନୂଆ ଅଭିଯାନଟିଏ ଶୁଣି ଘରେ ସମସ୍ତେ କାବା ହୋଇ ଶୁଣୁଥାନ୍ତି । ଜଙ୍ଗଲୀ ଜୀବଙ୍କର ମୁହଁରୁ ଜଙ୍ଗଲ କାହାଣୀ ଶୁଣିବାକୁ ସମସ୍ତଙ୍କୁ ମଜା ଲାଗୁଥାଏ । ପିଲାଙ୍କର ପାଟି ଜମା ବନ୍ଦ ହେଉ ନଥାଏ । ସାହି ପଡିଶାରୁ ଲୋକେ କାମଦାମ ସାରି ଏହି[illegible] କଥାଗୁଡିକୁ ଶୁଣୁଥାନ୍ତି । ପ୍ରତ୍ୟେକ ପିଲା ଘରେ ଗୋଟିଏ ଲେଖାଏଁ ମେଳା ଚାଲିଲା । ଦିନେ ଦୁଇ ଦିନ ଯାଏଁ ଏପରି ରୋମାଞ୍ଚକାରୀ ଅନୁଭୂତି ସଭା ଚାଲିଲା । ଏଥର ଯିଏ ଯାହା କାମରେ ଲାଗିଲେ ।

ଏଥର ଏକ ବଡ଼ ଅଘଟଣ ଦେଖିବାକୁ ମିଳିଲା । ଯେଉଁମାନେ ଚିଡିଆଖାନା ଯାଇ ପଶୁପକ୍ଷୀଙ୍କ ସାଥିରେ ରହିଥିଲେ, ସମସ୍ତଙ୍କର କିଛି ନା କିଛି ଅସୁବିଧା ଦେଖାଦେଲା । ସମସ୍ତେ ରୋଗିଣା ହୋଇ ପଡିଲେ । କାହାକୁ ଜ୍ୱର, କାହାକୁ ଝାଡା, କାହାକୁ ବାନ୍ତି, କାହାର ପେଟମରା, ଆଖିଦୋଷ, ଚମରୋଗ, ଏମିତିକା ବିବିଧ ରୋଗ ଦେଖାଦେଲା । ଗୁରୁଜୀ ମଧ୍ୟ ବେମାର ପଡିଲେ । ଗାଁସାରା କୋକୁଆ ଭୟ ଖେଳିଗଲା । ସମସ୍ତେ ଗଲାବେଳେ ଏତେ ହସଖୁସିରେ ଯାଇଥିଲେ । କିନ୍ତୁ ଫେରିବା ପରେ ଇଏ କି ଅବସ୍ଥା ? ଖାଲି ରୋଗ ଆଉ ରୋଗ ! କାଳେ ପଶୁପକ୍ଷୀଙ୍କ ଠାରୁ କ'ଣ ଏସବୁ ରୋଗ ଡେଇଁଛି କି ଆଉ ? ଡାକ୍ତରବାବୁ ମନା କଲେ । ଏସବୁ ରୋଗ ନ ଥିଲା । ଅସାବଧାନତା ହେତୁ ସମସ୍ତଙ୍କର ଦେହରେ କେତେକ ଅସୁବିଧା ଦେଖା ଦେଇଥିଲା ।



ଡାକ୍ତର ବାବୁ ବିବିଧ ପ୍ରଶ୍ନ ପଚରା ଉଚରା କଲେ । ସେମାନେ କେବେ, କେଉଁଠି କ'ଣ ଖାଇଥିଲେ, କେଉଁଠି ରହୁଥିଲେ, କିପରି ଚଳୁଥିଲେ, ଇତ୍ୟାଦି । ଜଣା ପଡିଲା ଯେ ମୂଳ ଅସୁବିଧାଟି ରହିଥିଲା ତାଙ୍କ ଖିଆ ପିଆରେ । ମାମୀ ମୟୂର ସହିତ ରହିଥିଲା - ସେ କେବଳ ଚଣା, କୋଳି, ଧାନ ଆଦି ଖାଇଥିଲା । ଚମ୍ପି ପେଚା ସାଥିରେ କେବଳ ମାଂସ ଖାଇଥିଲା; ଡ଼ବୁ କୋକିଶିଆଳୀ ବସାରେ ଫଳମୂଳ ଖାଇଥିଲା; ରମେଶ ଧଳା ବାଘ ସହ ବସି ଖାଲି ମାଂସ ଖାଇଥିଲା; ସେବତୀ ଶୁଆ ସହିତ ପିଜୁଳି ଓ ଚଣା ଖାଇଥିଲା । ଟୁନା ଭାଲୁ ସହିତ ମାଂସ, ନଟ ଓ ଜୟ କେବଳ ଗଛ ପତ୍ର, ବାବୁଲି ଘାସ ପତ୍ର, ମଞ୍ଜୁ ଓ ନୀନା ମାଛ ଖାଇଥିଲେ । ଗୁରୁଜୀ ଅଜଗର ସାପ ସହ କେତେ ରକମର ମାଂସ ହିଁ ଖାଇଥିଲେ । ସେତେବେଳେ ପଶୁ ପକ୍ଷୀଙ୍କ ସହ ହସଖୁସି ଭିତରେ କେହି କିଛି ଭାବି ନ ଥିଲେ । କିନ୍ତୁ ତା'ର ଫଳ ଏବେ ମିଳିଗଲା ।

ଡାକ୍ତର ବାବୁ ସମସ୍ତଙ୍କର ଚିକିତ୍ସା ଆରମ୍ଭ କରି ଦେଲେ । ଅଳ୍ପଦିନ ଭିତରେ ସମସ୍ତେ ଆଗ ଭଳି ସୁସ୍ଥ ହୋଇଗଲେ । ସେମାନଙ୍କର ନୂଆ ଅନୁଭୂତି ଶୁଣି ଡାକ୍ତର



ବାବୁ ବି ଖୁସି ହୋଇ ଯାଉଥିଲେ । ପିଲା ଓ ଗୁରୁଜୀଙ୍କ ପାଇଁ ଏହା ଏକ ମନଛୁଆଁ, ମଜାଦାର ଓ ଶିକ୍ଷଣୀୟ ଅନୁଭୂତି ଥିଲା । ସମସ୍ତେ ସୁସ୍ଥ ହୋଇ ଛୁଟିରେ ଅନେକ ମଉଜ କଲେ । ଛୁଟି ସରିଲା । ସ୍କୁଲ ଖୋଲିଲା । ଗୁରୁଜୀ ପିଲାଙ୍କୁ ଏକ ଖୁସି ଖବର ଶୁଣାଇଲେ ଯେ, ଦୁଇ ଦିନ ପରେ ଡାକ୍ତର ବାବୁ ତାଙ୍କ ସ୍କୁଲକୁ ଆସିବେ । ସେ ସବୁ ପିଲାଙ୍କ ପାଇଁ ଖାଦ୍ୟ ଓ ଦେହ ବିଷୟରେ ବୁଝାଇବେ । ସେ ଦିନ ଡାକ୍ତର ବାବୁ ଉପର ବେଳା ପହଞ୍ଚିଲେ । ସବୁ ପିଲା ପଡିଆରେ ବସିଲେ । ଗୁରୁଜୀ ବି ପିଲାଙ୍କ ସହ ବସିଲେ । ଡାକ୍ତର ବାବୁ ବରଣ୍ଡାରେ ବସିଲେ ।

ପ୍ରଥମେ ପିଲାମାନେ ତାଙ୍କ ଚିଡିଆଖାନା ବୁଲା ଅନୁଭୂତି ଶୁଣାଇଲେ । ଫେରିବା ପରେ ସେମାନେ କିପରି ଅସୁସ୍ଥ ହେଲେ ଓ ଡାକ୍ତର ବାବୁ ସେମାନଙ୍କର ଚିକିତ୍ସା କଲେ ତା' ବି କହିଲେ । ଅନ୍ୟ ପିଲାମାନେ ଜାଣିବାକୁ ଚାହୁଁଥାନ୍ତି, ଅସୁବିଧାଟା କେଉଁଠି ଥିଲା ? ଡାକ୍ତର ବାବୁ ସେ ବିଷୟରେ ବୁଝାଇବାକୁ ଆରମ୍ଭ କଲେ । ତାଙ୍କ ବିଷୟ ବସ୍ତୁ ଥିଲା, " ଆମ ଦେହ ପାଇଁ ପଞ୍ଚାମୃତ । " ଏ ବିଷୟରେ ପିଲା ଯାହା ଯାହା ଜାଣିବାକୁ ଚାହିଁଲେ ସେ ସବୁ ବୁଝାଇଲେ ।

ଆଲୋଚନାର ମଞ୍ଜିଗୁଡ଼ିକୁ ଗୁରୁଜୀ ଓ ପିଲାମାନେ ଏପରି ଟିପି ରଖୁଥିଲେ .....

## ରୋଗ କାହିଁକି ହୁଏ ? କିପରି ହୁଏ ?

ମଣିଷ ପରି କୁକୁର, ମୂଷା, ପିମ୍ପୁଡ଼ି, ଶୁଆ, ହାତୀ, ଆଦି କେତେ ରକମର ଜୀବ ଜନ୍ତୁ ଅଛନ୍ତି । ସମସ୍ତଙ୍କ ଦେହ ଅଲଗା ଅଲଗା । ସମସ୍ତଙ୍କର ଖାଇବା ଓ ରହିବା ଜାଗା ବି ଅଲଗା । ଆମେ ମଣିଷ କଥା ଦେଖିବା । ଆମର ହାତ, ଗୋଡ଼, ପେଟ, ମୁଣ୍ଡ, ଦାନ୍ତ ଆଦି ବିଭିନ୍ନ ଅଙ୍ଗ ରହିଛି । ସମସ୍ତେ ଭଲ ରହି ଠିକ୍ କାମ କରିବା ପାଇଁ ଖାଦ୍ୟ, ପାଣି, ସଫା ସୁତୁରା, ଖୁସି, ବିଶ୍ରାମ ଆଦି ଯତ୍ନ ଲୋଡ଼ା ହୁଏ । ଏଥିରେ ଅଭାବ ହେଲେ ଅଙ୍ଗଟିର ଅସୁବିଧା ହୁଏ । ସେ ଖରାପ ହୁଏ ।

ଦେହର ଯେ କୌଣସି ଜାଗାରେ ଏପରି ଅସୁବିଧା ଦେଖା ଦେବାକୁ ଆମେ ଗୋଟିଏ ଶବ୍ଦରେ ରୋଗ ବୋଲି କହୁ । ଆମ ଦେହ ପାଇଁ ଯାହା ଯାହା ଲୋଡ଼ା, ସେଥିରେ ଅଭାବ ହେଲେ ଆମେ ରୋଗିଣା ହୋଇଯାଉ । ଆମର କାମ କରିବାର ବଳ କମିଯାଏ । ଦେହ ବେଶୀ ଖରାପ ହେଲେ ଆମେ ଏପରିକି ଚାଲ ବୁଲ କରି ପାରୁ ନାହିଁ । ଦେହ ଠିକ୍ ହେବା ପାଇଁ ବେଶ୍ କିଛି ସମୟ ଲାଗେ । କେତେକ ରୋଗ ଆପେ ଆପେ ଭଲ ହୋଇଯାଏ । ଆମ ଦେହ ନିଜେ ନିଜେ ସୁଧୁରି ଯାଏ । କିନ୍ତୁ କେତେକ ରୋଗ ପାଇଁ ଡାକ୍ତରଙ୍କ ସାହାଯ୍ୟ ଲୋଡ଼ା ହୁଏ । ଦେହର ଅଭାବଟିକୁ ପୂରଣ କରିବା ପାଇଁ ସେ ଔଷଧ ଦିଅନ୍ତି । ଜଗିରଖି ଚଳିଲେ ଦେହ ପୁଣି ଠିକ୍ ହୋଇଯାଏ ।

ବେଳେ ବେଳେ ବାହାରର କେତେକ କୁନି ଜୀବ (ଜୀବାଣୁ, ଭୂତାଣୁ ଆଦି) ବା ଅନ୍ୟ କାରଣରୁ ବି ଆମର ଦେହ ଖରାପ ହୁଏ । ଦେହରେ କେତେକ ଅସୁବିଧା ଦେଖାଦିଏ । କିନ୍ତୁ ଡାକ୍ତରଙ୍କ କଥା ମାନି ଚଳିଲେ ଏସବୁ ଭଲ ହୋଇଯାଏ ।

## ଆମ ଦେହ ଭିତରେ କାହାର କାମ କ'ଣ ?

ଦେହରେ ରୋଗ କିପରି ହୁଏ ଜାଣିବା ଆଗରୁ ଦେହର ଗଠନକୁ ଆମେ ଭଲ ଭାବେ ବୁଝିବା ଦରକାର । ବାହାରୁ ଆମେ ଆମର ହାତ, ଗୋଡ଼, ପେଟ, ଅଣ୍ଟା, ଛାତି ବେକ ଆଦିକୁ ଦେଖି ପାରୁଛେ । ଦର୍ପଣଟିଏ ଧରିଲେ ଆମେ ମୁହଁ,

ମୁଣ୍ଡର ଆଗ ପଛ, ଦେହର ପଛଭାଗ ଏସବୁକୁ ଦେଖି ପାରୁଛେ । ବାହାରୁ ଦେଖିବା ପାଇଁ ଏହା ବେଶ୍ ଗୋଲ ଗାଲିଆ ଓ ସୁନ୍ଦର ଦେଖାଯାଏ । ଏହାକୁ ସଜାଇ ରଖିବା ପାଇଁ ଆମେ ଗାଧୋଉ, ତେଲ ଓ ସାବୁନ ଲଗାଉ, ନଖ, ବାଳ କାଟୁ, ଜାମା ପିନ୍ଧୁ, ଛତାଧରୁ, ଜୋତା ପିନ୍ଧୁ..... ଏମିତି କେତେ କ'ଣ କରୁ ।

ଦେହର ଭିତରେ ଆମର ଅନେକ ଅଙ୍ଗ ରହିଛି । ଆମେ ଏସବୁକୁ ଦେଖି ପାରିବା ନାହିଁ । କିନ୍ତୁ ମଲା ମଣିଷର ଦେହକୁ କାଟି ବା, ଅପରେସନ୍ ବେଳେ ବା ଅନ୍ୟାନ୍ୟ ପଶୁ ପକ୍ଷୀଙ୍କ ଦେହର ଭିତର ସହ ତୁଳନା କରି ମଣିଷ ଏ କଥା ଜାଣି ପାରିଛି । ଏହାକୁ ବୁଝିବା ପାଇଁ ଆମେ ଚିତ୍ରକୁ ଦେଖିବା । ଆମ ଦେହଟିକୁ ତିନିଟି ଭାଗରେ ଦେଖାଯାଏ । ୧. ମୁଣ୍ଡ ୨. ଗଣ୍ଡି ୩. ଅଙ୍ଗ ପ୍ରତ୍ୟଙ୍ଗ ।



୧. ମୁଣ୍ଡ : ଏହା ଦେହର ଉପର ଭାଗରେ ଥାଏ । ଖପୁରୀକୁ ଦେଖିଲେ ଜଣା ପଡେ ଯେ, ଆମର ମୂଳ ଯନ୍ତ୍ର ମସ୍ତିଷ୍କଟି ଏହି ଖପୁରୀର ଟାଣ ହାଡ ମଧ୍ୟରେ ସୁରକ୍ଷିତ ହୋଇ ରହିଥାଏ । ଆଖି ଦୁଇଟି କୋରଡ ମଧ୍ୟରେ ଖଞ୍ଜି ହୋଇ ରହେ । ଏହା ଛଡା ମୁଣ୍ଡରେ କାନ, ନାକ, ପାଟି ଆଦିର ସୁବିଧା ରହିଥାଏ ।

୨. ଗଣ୍ଡି : ବେକ ଦ୍ୱାରା ମୁଣ୍ଡଟି ଗଣ୍ଡି ସହ ଯୋଡାଥାଏ । ଗଣ୍ଡିର ଦୁଇଟି ଭାଗ ଥାଏ : ଛାତି ଓ ତଳ ପେଟ । ଛାତିର ଭିତର ପାଖରେ ପଞ୍ଜରା ହାଡଗୁଡିକ ସଜାଇ ହୋଇ ରହିଥାଏ । ଏହା ଭିତରର ହୃତପିଣ୍ଡ ଓ ଫୁସ୍ ଫୁସ୍‌କୁ ସାଇତି ରଖିଥାଏ । ଏହାର ତଳକୁ ପେଟ ଭିତରେ ପାକସ୍ଥଳୀଟି ଥାଏ । ଏହା ସହିତ ଖାଦ୍ୟ ନଳୀ, କଲିଜା, ପିତ୍ତକୋଷ, ବୃକକ୍ ଓ ଜନନ ଅଙ୍ଗ ସବୁ ଯୋଡି ହୋଇଥାଏ । ଖାଦ୍ୟ ନଳୀଟି ପାଟିରୁ ମଳ ଦ୍ୱାର ଯାଏଁ ଲମ୍ବିଥାଏ । ଏହାର ଲମ୍ବ ପାଞ୍ଚଟି ମଣିଷଙ୍କଠୁ

ବି ଅଧିକ ହୁଏ । ପାକସ୍ଥଳୀ, କ୍ଷୁଦ୍ର ଓ ବୃହତ ଅନ୍ତ୍ର, ଯକୃତ ଆଦି ମିଶି ଖାଦ୍ୟକୁ ହଜମ କରନ୍ତି । ଏଥିରୁ ସାର ଓ ଲବଣ ଗୁଡିକୁ ଶୋଷି ନିଅନ୍ତି । ବୃକକ୍ ରକ୍ତକୁ ଛାଣି ସଫା କରେ । ମୂତ୍ରକୁ ଅଲଗା କରି ମୂତ୍ର ନଳୀ ଦେଇ ତାହାକୁ ପଠାଏ । ମେରୁଦଣ୍ଡଟି ଗଣ୍ଠିଟିକୁ ସଜେଇ ଧରିଥାଏ । ଏହା ଉପରେ ମାଂସପେଶୀ ସବୁ ସଜେଇ ହୋଇ ଦେହକୁ ବଳ ଯୋଗାଏ । ରକ୍ତ ନଳୀଗୁଡିକରେ ହୃତପିଣ୍ଡରୁ ବିଶୋଧିତ ରକ୍ତ ଦେହ ସାରା [illegible]

ଏହା ଛଡା ମସ୍ତିଷ୍କରୁ ଅନେକ ସରୁ ସରୁ ନଳୀ ଦେହ ସାରା ବିଛେଇ ହୋଇ ଆମକୁ ବିଭିନ୍ନ ଅଙ୍ଗର ଖବର ଶୁଣାଉ ଥାନ୍ତି । ଏହାକୁ ସ୍ନାୟୁ ବୋଲି କୁହାଯାଇଥାଏ । ମୋଟ ଉପରେ ଦେହ ଭିତରେ ୮/୧୦ଟି ଅଲଗା ଅଲଗା କାମ ଚାଲିଥାଏ । ପବନ ଚଳା ଚଳ, ଖାଦ୍ୟ ହଜମ, ରକ୍ତ ସଫେଇ ଓ ଚଳା ଚଳ, ମଳମୂତ୍ର ସଫେଇ, ଖବର ଦିଆ ନିଆ, କୋଷ ଭଙ୍ଗା ଗଢା, ପ୍ରଜନନ ପାଇଁ ପ୍ରସ୍ତୁତି ଏମିତି ବିଭିନ୍ନ କାମ । ଏସବୁକୁ ଚଳାଇବା ପାଇଁ ଅଲଗା ଅଲଗା ରସ ସବୁ ଝରି ଚାଲିଥାଏ । କିଏ ରକ୍ତରେ ମିଶି କାମ କରେ । କିଏ ନିଜେ ନିଜେ କାମ କରେ ।

୩. ଅଙ୍ଗ ପ୍ରତ୍ୟଙ୍ଗ : ଦେହର ବିଭିନ୍ନ ଜାଗାରେ ଅନେକ ଅଙ୍ଗ ଲାଗି ରହି କାମ କରୁଥାନ୍ତି । ହାତ, ଗୋଡ, ଆଙ୍ଗୁଠି ଆଦି ଅଙ୍ଗରେ ହାଡ ଓ ମାଂସପେଶୀ ସଜେଇ ହୋଇ ରହିଥାନ୍ତି । ଏମାନେ ବାହାରର ଅଧିକାଂଶ କାମକୁ ତୁଲାଇ ଥାନ୍ତି । ନିଃଶ୍ୱାସ ପ୍ରଶ୍ୱାସ, ଶୁଣିବା, ଶୁଙ୍ଘିବା, ଚାଖିବା, ଛୁଇଁବା ଆଦି କାମ ସବୁ ବେଳେ ଚାଲି ଥାଏ । କିନ୍ତୁ ପାଟି ପାଇଁ ଖାଦ୍ୟ ଯୋଗାଇବା, ଧାଇଁବା, ଖେଳିବା, ବୁଲିବା, ଗାଡି ଚଲାଇବା ଆଦି ପାଇଁ ହାତ, ଗୋଡ ଆଦି ଅଙ୍ଗ ହିଁ କାମରେ ଲାଗେ ।

## ଦେହ କେଉଁଥିରେ ତିଆରି ?

ଘରଟିଏ ବନାଇବା ପାଇଁ ଆମେ ଝାଟି ଉପରେ ମାଟି ବୋଳି ଥାଉ । ବେଶୀ ପଇସା ଥିଲେ ଆମେ ଇଟା ବା ପଥରକୁ ସଜାଇ ରଖି ଏହା ଉପରେ ସିମେଣ୍ଟ ପଲସ୍ତରା ବୋଳୁ । ଆମ ଦେହ ମଧ୍ୟ କେତେକ ମୂଳ ଜିନିଷରେ ତିଆରି । ଏହାର ନାଁ 'କୋଷ' । ଏହା ଖାଲି ଆଖିକୁ ଦେଖାଯାଏ ନାହିଁ । ଅଣୁବୀକ୍ଷଣରେ ଦେଖିହୁଏ ।

କୋଷ ହେଉଛି ଦେହର ମୂଳ ଏକକ । ଲକ୍ଷ ଲକ୍ଷ କୋଷ ପାଖକୁ ପାଖ ଲାଗି ରହିଥାନ୍ତି । କୋଟି କୋଟି କୋଷ ମିଶି ଗୋଟିଏ ଅଙ୍ଗ ତିଆରି ହୋଇ ଥାଏ । ଅନେକଗୁଡିଏ ଅଙ୍ଗ ମିଶି ଆମର କଙ୍କାଳ, ପାଚତନ୍ତ୍ର, ଶ୍ୱାସ ତନ୍ତ୍ର, ସ୍ନାୟୁ ତନ୍ତ୍ର, ମଳ ସଫା ତନ୍ତ୍ର, ଆଦି ବ୍ୟବସ୍ଥା ତିଆରି ହୋଇଛି । ପ୍ରତ୍ୟେକ ବିଭାଗ ଅଲଗା ଅଲଗା କାମ କରିଥାଏ ।

## ପାଚ ତନ୍ତ୍ର

ଆମ ଯାହା ଖାଇଲେ ବି ପାଚ ତନ୍ତ୍ର ଏହାକୁ ହଜମ କରି ଏଥିରୁ ଖାଦ୍ୟ ସାର ଓ ଲବଣ ଶୋଷି ନେଇଥାଏ । ପ୍ରତିଦିନ ଆମେ ବିଭିନ୍ନ କାମ କରିବା ପାଇଁ ଯଥେଷ୍ଟ ଶକ୍ତି ଲୋଡିଥାନ୍ତି । ଆମେ ଖାଦ୍ୟରୁ ଏହି ଶକ୍ତି ପାଇଥାନ୍ତି । ପ୍ରଥମେ ଆମେ ପାଟିରେ ଚୋବାଇବା ଠାରୁ ହଜମ କାମ ଆରମ୍ଭ ହୋଇଥାଏ । କିଛି ସମୟ ପରେ ଏହା ତଳକୁ ଖସି ଯାଇ ପାକସ୍ଥଳୀରେ ପହଞ୍ଚେ । ଏଠାରେ ବିଭିନ୍ନ ରସ ମିଶି ଏହା ତରଳ ହୋଇ ଯାଏ । ଆମ ଦେହ ଏଥିରୁ ଖାଦ୍ୟସାର ଓ ଲବଣକୁ ଶୋଷିନିଏ । ବଳକା ଖାଦ୍ୟକୁ ଏହା ମଳଦ୍ୱାର ଦେଇ ବାହାରକୁ ଫିଙ୍ଗିଦିଏ । ଖାଦ୍ୟକୁ ହଜମ କରିବାରେ ଦାନ୍ତ ପ୍ରଥମ କାମ କରିଥାଏ । ଚୋବାଇବା ବେଳେ ଖାଦ୍ୟଗୁଡିକ ଖଣ୍ଡ ଖଣ୍ଡ ହୋଇଯାଏ । ଏଥିରେ ଲାଳ ମିଶି ହଜମ କାମ ଆରମ୍ଭ ହୁଏ । ଦାନ୍ତର ଯତ୍ନ ନେବା ବହୁତ ଜରୁରୀ ।

## ଖାଦ୍ୟ ଓ ଏହାର କାମ

ପ୍ରତ୍ୟେକ ଜୀବ ବଞ୍ଚିବା ପାଇଁ ଖାଦ୍ୟ ଲୋଡି ଥାଏ । କିନ୍ତୁ ସବୁ ଜୀବଙ୍କର ଖାଦ୍ୟ ଅଲଗା ଅଲଗା । ନିଜ ଦେହର ଗଠନ ଅନୁସାରେ କିଏ, କ'ଣ ଖାଇଥାନ୍ତି । ପିମ୍ପୁଡିର ଖାଦ୍ୟ ଉଇ ଖାଇ ପାରେ ନାହିଁ କିମ୍ବା ମାଙ୍କଡ, ଗାଈ, ବାଘର ଖାଦ୍ୟ ମଣିଷ ଖାଇପାରେ ନାହିଁ । କେବଳ କେତେକ ଖାଦ୍ୟରେ ମେଳ ରହେ । ଚିଡିଆଖାନାରେ ପିଲାମାନେ ସାଙ୍ଗମାନଙ୍କ ସହ ମିଶି ପଶୁ ପକ୍ଷୀ ଖାଦ୍ୟ ଖାଇଲେ ଓ ବେମାରରେ ପଡିଲେ । ଖାଦ୍ୟ ଓ ରୋଗ ମଧ୍ୟରେ ଏକ ଗୁମର ସମ୍ପର୍କ ରହିଛି । ଆମେ ଏହାକୁ ଜାଣିବା ଦରକାର । ଆମ ଦେହର ବିଭିନ୍ନ ପ୍ରକାରର କାମ ପାଇଁ ତିନି ପକାରର ଖାଦ୍ୟ ଲୋଡା ହୋଇଥାଏ ।

୧. ଶକ୍ତି ପାଇଁ ଖାଦ୍ୟ (**ଶ୍ୱେତସାର, ସ୍ନେହସାର**)
୨. ଦେହ ଗଢା ପାଇଁ ଖାଦ୍ୟ (**ପୁଷ୍ଟିସାର**)
୩. ରୋଗ ପ୍ରତିରୋଧ ପାଇଁ ଖାଦ୍ୟ (**ଧାତୁସାର ଓ ଲବଣ**)

**୧. ଶକ୍ତି ପାଇଁ ଖାଦ୍ୟ :** ଜୀବନ ଭିତରେ ଆମେ ଅନେକ ପ୍ରକାରର କାମ କରି ଚାଲିଥାଉ । ଗାଡିଟିଏ ଧାଇଁବା ପାଇଁ ତେଲ ଦରକାର ହୁଏ । ତେଲ ନଥିଲେ ଗାଡି ଚାଲି ପାରେ ନାହିଁ । ସେପରି ଆମର ବିଭିନ୍ନ କାମ ପାଇଁ ଶକ୍ତି ଦରକାର । ଖେଳିବା, ଧାଇଁବା, ଡେଇଁବା, କୁଦିବା, ଉଠିବା ଆଦି ସବୁ କାମ ପାଇଁ ଆମର ଯଥେଷ୍ଟ ଶକ୍ତି ଲୋଡା ହୁଏ । ଆମେ ଯେଉଁ ଖାଦ୍ୟ ଖାଆନ୍ତି ସେଥିରୁ କେତେକ ନିର୍ଦ୍ଦିଷ୍ଟ ଖାଦ୍ୟ ହିଁ ଶକ୍ତି ଯୋଗାଇ ଥାଆନ୍ତି ।



ଏଗୁଡିକ ଆମକୁ ଜାଳେଣୀ କାଠ ଭଳି ଶକ୍ତି ଦିଅନ୍ତି । ଚାଉଳ, ଗହମ, ମକା, ମାଣ୍ଡିଆ, ବାଜରା, ଭୂଇଁ ଚଣା, ଆଳୁ, ଚିନି, ଗୁଡ, ଆଦି ଏହି ଦଳର । ଏହାକୁ ଆମେ **ଶ୍ୱେତସାର** ବୋଲି କହିଥାନ୍ତି । ଏହା ଛଡା ତେଲ ଓ ଘିଅରୁ ମଧ ଶକ୍ତି ମିଳି ପାରେ । ଏହାକୁ **ସ୍ନେହସାର** ବୋଲି କୁହାଯାଏ । ଏଥିରୁ ଅଳ୍ପ ଖାଇଲେ ବି ଯଥେଷ୍ଟ ଶକ୍ତି ମିଳି ଥାଏ ।

**୨. ଦେହଗଢା ଖାଦ୍ୟ (ପୁଷ୍ଟିସାର):** ଆମେ କାମ କରିବା ସମୟରେ ଆମ ଦେହର ଅନେକ କୋଷ ଭାଙ୍ଗି ଯାଏ । ଏଗୁଡିକୁ ବଦଳାଇ ଏଠାରେ ନୂଆ କୋଷ ଲଗାଇବାକୁ ପଡେ । ପୁଷ୍ଟିସାର ଥିବା ଖାଦ୍ୟ ଦ୍ୱାରା ଏହି କାମ ହୋଇପାରେ । ଏହା ଦେହକୁ ବଢିବାରେ ସାହାଯ୍ୟ କରିଥାଏ । ସବୁ ବୟସର ଲୋକଙ୍କ ପାଇଁ ଏହା ଦରକାର । କିନ୍ତୁ ବଢିଲା ପିଲାଙ୍କ ପାଇଁ ଏହା ଅଧିକ ଲୋଡା ହୁଏ । ଏହା ମାଛ, ମାଂସ, କ୍ଷୀର, ଅଣ୍ଡା, ଆଦିରେ ବେଶୀ ପରିମାଣରେ ଥାଏ । ବୁଟ, ବିନ୍ସ୍, ମଟର,



ହରଡ, ମୁଗ, ଆଦି ଡାଲି, ଭୁଇଁଚଣା, ଦହି, ଚହ୍ଲା, ଶାଗ, ବନ୍ଧାକୋବି ଆଦି ଶାଗୁଆ ପନିପରିବାରେ ବି ଏହି ସାର ଥାଏ । ଏହାକୁ ଯଥେଷ୍ଟ ପରିମାଣରେ ନ ପାଇଲେ ଲୋକଟି ଦୁର୍ବଳ ହୋଇଯାଏ । ତା'ର ଦେହ ଓ ମନ ଠିକ୍ ଭାବେ ବଢ଼ିପାରେ ନାହିଁ ।

**୩. ରୋଗ ପ୍ରତିଷେଧକ ଖାଦ୍ୟ (ଧାତୁସାର ଓ ଲବଣ) :** ଶ୍ୱେତସାର, ସ୍ନେହସାର ଓ ପୁଷ୍ଟିସାର ଆମ ପାଇଁ ମୁଖ୍ୟ ଖାଦ୍ୟ ହୋଇଥାଏ । କିନ୍ତୁ ଏଥିସହ ଆଉ ଏକ ପ୍ରକାର ଖାଦ୍ୟ ସବୁବେଳେ ଲୋଡା ହୋଇଥାଏ । ଦେହକୁ ବିଭିନ୍ନ ରୋଗରୁ ମୁକ୍ତ ରଖିବାରେ ଏହା ଭଲ କାମ କରେ । ଜୀବସାର, ଧାତୁସାର ଓ ଲବଣଗୁଡିକ ଏ ଜାତିର ଖାଦ୍ୟ । ମୁଖ୍ୟତଃ ତଟକା ପନି ପରିବା, ଫଳ, ଶାଗ ଓ ଆମିଷରୁ ଏହା ମିଳିଥାଏ । ଏହାକୁ ଦୁଇ ଭାଗ କରି ପାରିବା । ସଜନା ଶାଗ, ବନ୍ଧା କୋବି, ମୂଳାଶାଗ ଓ ଅନ୍ୟ ଶାଗରେ ଯଥେଷ୍ଟ ଲୁହା ରହିଥାଏ । ଏହା ଆମ ରକ୍ତକୁ ଲାଲ୍ ରଙ୍ଗ ଦେଇଥାଏ ।



ଅମୃତ ଭଣ୍ଡା, ଗାଜର, କଖାରୁ, ଟମାଟ, ପାଚିଲା ଆମ୍ବ ଆଦି ନାଲିଆ ରଙ୍ଗର ଫଳ ପରିବା; ଦହି, ଲହୁଣୀ, ଚହ୍ଲା ଆଦି କ୍ଷୀରଜାତ ଖାଦ୍ୟ, ଅଣ୍ଡା, କଲିଜା ଆଦି ଆମିଷ ଓ ଶାଗୁଆ ପନି ପରିବାରେ ଯଥେଷ୍ଟ ଜୀବସାର କ ଥାଏ । ଏହା ଆଖି ପାଇଁ ଦରକାର । ଏହି ଜୀବସାର ଓ ଧାତୁସାର ନିୟମିତ ଖାଇବାକୁ ପଡେ । ଏହାର ପରିମାଣ କମିଗଲେ ନାନା ପ୍ରକାରର ରୋଗ ଆରମ୍ଭ ହୁଏ ।

| ଜୀବସାର ଥିବା ଖାଦ୍ୟ | ଧାତୁସାର ଥିବା ଖାଦ୍ୟ | |
| --- | --- | --- |
| ପନି ପରିବା | ଶାଗ, ବୁଟ | ଲୁଣ |
| ଫଳ ମୂଳ | ବନ୍ଧା କୋବି | କ୍ଷୀର |
| ମାଛ, ମାଂସ, ଅଣ୍ଡା, କ୍ଷୀର | ସଜନା ଛୁଇଁ | କଲିଜା |

ଉପରେ ଲେଖାଥିବା ତିନି (୧,୨,୩) ଜାତିର ଖାଦ୍ୟ ବେଶୀ ଖାଇବା ଦରକାର । ଏଥିରୁ କେଉଁଟି ବି କମିଗଲେ ରୋଗର ସମ୍ଭାବନା ଦେଖାଦିଏ ।

## ପେଟେ ଖାଇ ବି ଉପାସ

ଆମ ସମାଜରେ ଏହି କଥାଟି ମନେ ରଖିବା ବେଶୀ ଜରୁରୀ । ଜଣେ ଯଦି କେବଳ ପେଟେ ଭାତ ଖାଇବ, ତେବେ ସେ ଉପାସ ରହିବା ଭଳି ହେବ । କାରଣ ସେ କେବଳ ଶ୍ୱେତସାର ହିଁ ଖାଉଛି । ସ୍ନେହସାର, ପୁଷ୍ଟିସାର, ଧାତୁସାର, ଜୀବସାର, ଲବଣ ଆଦି ଏଥିରେ ନଥାଏ । କିଛି ଲୋକ କେବଳ ପଖାଳ, ଲୁଣ, ଲଙ୍କା, ପିଆଜ ଖାଇଥାଆନ୍ତି । ବିଭିନ୍ନ କାରଣରୁ ସେମାନେ ଅଧିକା କିଛି ଖାଇ ନଥାନ୍ତି ।

କିନ୍ତୁ ଅନେକ ଦିନ ଧରି ଏପରି ଖାଇଲେ ଦେହରେ ବିଭିନ୍ନ ଅସୁବିଧା ଦେଖା ଦେଇପାରେ । ଏଥିସହ କିଛି ଡାଲି, ଶାଗ, ପରିବା ଆଦି ଖାଇବା ନିହାତି ଜରୁରୀ । ଏଥିରେ ବିଶେଷ ଖର୍ଚ୍ଚ ହୋଇ ନଥାଏ । ବାଡି ବଗିଚାରେ ଆମେ ସହଜରେ ଏସବୁ ଉପୁଜାଇ ପାରିବା ।

# ସୁଷମ ଖାଦ୍ୟ

କାମିକା ଲୋକ, ଗର୍ଭିଣୀ ମହିଳା ଓ ପିଲାଙ୍କ ପାଇଁ ଅଧିକା ପରିମାଣର ଖାଦ୍ୟ ଲୋଡା ହୋଇଥାଏ । ଅଧିକା କହିଲେ, କେବଳ ଯେ କୌଣସି ଗୋଟିଏ ଖାଦ୍ୟ ନୁହେଁ । ସବୁ ଜାତିର ଖାଦ୍ୟକୁ ଏକ ନିର୍ଦ୍ଦିଷ୍ଟ ଅନୁପାତରେ ନେବାକୁ ପଡେ । ତା ହେଲେ ହିଁ ଦେହର ଚାହିଦା ମେଣ୍ଟି ପାରେ । କାମିକା ଲୋକଙ୍କର ଖିଆପିଆରେ ଏତେ ବାଛ ବିଚାର ନଥାଏ । ତାଙ୍କୁ ପ୍ରବଳ ଭୋକ ଲାଗେ । ତେଣୁ ସେମାନେ ଯାହା କିଛି ପେଟେ ଖାଇ ଦିଅନ୍ତି ।

କିନ୍ତୁ ଏହା ଠିକ୍ ଖାଦ୍ୟ ନୁହେଁ । ସେମାନେ ସବୁ ଜାତିର ଖାଦ୍ୟକୁ ନିର୍ଦ୍ଦିଷ୍ଟ ପରିମାଣରେ ଖାଇଲେ ହିଁ ଦେହ ସୁସ୍ଥ; ନିରୋଗ ଓ କାମିକା ରହିପାରେ । ଆମର ଅଧିକାଂଶ ମୂଲିଆ ଭାଇ ଭଉଣୀମାନେ କଠିନ ପରିଶ୍ରମ କରନ୍ତି । କିନ୍ତୁ ଗରିବୀ ଯୋଗୁଁ ହେଉ ବା ଜାଣି ନଥିବା ଯୋଗୁଁ ହେଉ, କେହି ବି ସନ୍ତୁଳିତ ଖାଦ୍ୟ ଖାଇ ନଥାନ୍ତି । ପେଟେ ଭାତ, ଲୁଣ, ଲଙ୍କା ହିଁ ତାଙ୍କର ହାରାହାରି ଭୋଜନ ହୋଇଥାଏ । ଅଧିକା ସୁଷମ ଖାଦ୍ୟ ଖାଇ ପାରିଲେ ସେମାନେ ଅଧିକ ସୁସ୍ଥ ହୋଇ ପାରନ୍ତେ ଓ ବେଶୀ କାଳ କିଛି ଅଧିକ କାମ କରି ପାରନ୍ତେ ।

ପିଲା ଓ ଗର୍ଭିଣୀ ମହିଳାମାନେ ଖିଆପିଆରେ ବେଶୀ ବଛାବଛି କରନ୍ତି । ପାଟିକୁ ଯାହା ସୁଆଦ ଲାଗେ, ତାହା ହିଁ ଖାଆନ୍ତି । କିନ୍ତୁ ଏହି ଅବସ୍ଥାରେ ଦେହ ଅଧିକା ପରିମାଣର ସୁଷମ ଖାଦ୍ୟ ଲୋଡିଥାଏ । ସେମାନେ ସୁଆଦ ଖୋଜିବା ଯୋଗୁଁ ଦେହର ଅନେକ ଚାହିଦା ପୂରଣ ହୋଇପାରେ ନାହିଁ । ତେଣୁ ସେମାନଙ୍କ ଠାରେ ଅନେକ ଅସୁବିଧା ଦେଖାଦିଏ । ବିଶେଷ କରି, ମହିଳାଙ୍କ ମଧ୍ୟରେ ରକ୍ତହୀନତା ଓ ମନ୍ଦ ପୁଷ୍ଟି (ପିଲାଙ୍କ ଠାରେ ବି) ବେଶୀ ଦେଖାଦିଏ ।

ଜଣେ ଲୋକର ବୟସ ଓ ଶରୀର ଗଠନ ଅନୁସାରେ ଖାଦ୍ୟର ପରିମାଣ ନିର୍ଭର କରିଥାଏ । ଜଣକୁ କେତେ ପରିମାଣର ଖାଦ୍ୟ ଲୋଡା ହୁଏ, ତାହା ଆମେମାନେ ଜାଣିବା ଦରକାର । ବିଭିନ୍ନ ଖାଦ୍ୟରେ କେତେ ପରିମାଣର ଶକ୍ତି ମିଳି ପାରିବ ? ଏହା ଜାଣିବା ପାଇଁ ଆମକୁ ଏକ ନୂଆ ଏକକ ଜାଣିବାକୁ ହେବ । ଏହାର ନାମ **କାଲୋରୀ** । କିଲେ ଚାଉଳରୁ ସାଢେ ତିନି କିଲୋ (ପ୍ରାୟ ୩୫୦୦)

କାଲୋରୀ ଶକ୍ତି ମିଳିପାରେ । କିଲେ ହରଡ ଡାଲିରୁ ଚାଉଳ ଅପେକ୍ଷା ଅଳ୍ପ ଅଧିକ ଶକ୍ତି ମିଳି ପାରେ । ଏକା ପରିମାଣର ମାଛରୁ ପ୍ରାୟ ୧ କିଲୋ କାଲୋରୀ ଓ କୁକୁଡା ଅଣ୍ଡାରୁ ୧୭୫୦ କାଲୋରୀ ଶକ୍ତ ମିଳିଥାଏ । ଆମକୁ ଖାଦ୍ୟରେ ଶକ୍ତିର ପରିମାଣ ଓ ବିଭିନ୍ନ ସାରର ଅନୁପାତକୁ ଜଗିବାକୁ ପଡେ । ବିଭିନ୍ନ ବୟସର ଲୋକଙ୍କ ପାଇଁ ଅଲଗା ପରିମାଣର ଶକ୍ତି ଲୋଡା ହୋଇଥାଏ । ଜଣେ କାମିକା ପୁରୁଷ ଲୋକ ପାଇଁ ଦିନକୁ ୩୦୦୦ କାଲୋରୀ ଶକ୍ତି ଦରକାର ହୁଏ ।

ଜଣେ ମହିଳାଙ୍କ ପାଇଁ ପ୍ରାୟ ୨୬୦୦ କାଲୋରୀ ଶକ୍ତି ଲୋଡା ହୁଏ । କିନ୍ତୁ ଗର୍ଭବତୀ ମହିଳାଙ୍କ ପାଇଁ ଅଧିକା ଶକ୍ତି ଲୋଡା ଥାଏ । ସେପରି ପିଲାଙ୍କ ପାଇଁ [illegible]ଧ । ବର୍ଷେ, ଦି' ବର୍ଷର ଛୁଆଟିଏ ପାଇଁ ଦିନକୁ ଏକ କିଲୋ କାଲୋରୀ ଶକ୍ତି ଲୋଡା ହୁଏ । ପାଞ୍ଚ ବର୍ଷ ବେଳକୁ ଏହାର ପରିମାଣ ଦେଢ କିଲୋକୁ ବଢିଯାଏ । ବାର ବର୍ଷର ହେଲା ବେଳକୁ ସେ ଜଣେ ବଡ଼ ମଣିଷ ସହ ସମାନ ଖାଦ୍ୟ ଶକ୍ତି ଲୋଡେ (ପ୍ରାୟ ୨ କିଲୋ କାଲୋରୀ) । ଗର୍ଭିଣୀ ମହିଳାଙ୍କ ପେଟର ଛୁଆ ପାଇଁ ଓ ପିଲାଙ୍କର ବଢନ୍ତା ଦେହ ପାଇଁ ଶକ୍ତିର ଚାହିଦା ବଢିଯାଏ ।

ଦେହରେ କୌଣସି ଅସୁବିଧା ଦେଖା ଦେଲା ପରେ ହିଁ ଆମେମାନେ ଦେହ କଥା ଚିନ୍ତା କରୁ । ଡାକ୍ତରଙ୍କ ଠାରୁ ଔଷଧ ଓ ଚିକିତ୍ସା ଚାହୁଁ । କିନ୍ତୁ ଏହା ଏକ ଭୁଲ କାମ । ଆମେ ଯାହା ବି କାମ କରିବା ପାଇଁ ଏକ ସୁସ୍ଥ ଦେହ ଓ ଖୁସି ମନ ଦରକାର । ଏହା ବିନା କୌଣସି କାମର ମାନ ଭଲ ହୋଇ ପାରେ ନାହିଁ । ଜଣେ ଅସୁସ୍ଥ ଲୋକ କେବେ ସୁସ୍ଥ ଓ ଉନ୍ନତ ଚିନ୍ତା କରି ପାରେ ନାହିଁ । ସେ ସୁସ୍ଥ ଥିଲେ ନିଜ ଚିନ୍ତାଧାରା ଓ ଚିନ୍ତା ଅଧିକା ବଳିଷ୍ଠ, ସମାଜ ଉପଯୋଗୀ ଓ ସୁସ୍ଥ ହୋଇ ପାରେ ।

ତେଣୁ ଜୀବନରେ ସ୍ୱାସ୍ଥ୍ୟକୁ ହିଁ ସବୁଠୁ ବେଶୀ ଗୁରୁତ୍ୱ ଦିଆ ଯାଇଥାଏ । ସୁସ୍ଥ ଅର୍ଥ କେବଳ ମାଂସପେଶୀ ବଢାଇବା ନୁହେଁ, ବରଂ ଫୁର୍ତ୍ତି ହେବା, ଖୁସି ହେବା ଓ ଅଧିକା କାମ (ଉଭୟ ଶାରୀରିକ ଓ ମାନସିକ) କରି ପାରିବା । ଏଦିଗରୁ ଯାହାର ସ୍ୱାସ୍ଥ୍ୟ ଭଲ ଥାଏ, ସେ ହିଁ ସବୁଠୁ ଭାଗ୍ୟବାନ ଓ ଖୁସିଲୋକ ବୋଲି କୁହା ଯାଇଥାଏ । ସଂସ୍କୃତରେ ଗୋଟିଏ ଶ୍ଳୋକ ଅଛି ଯେ " ଶରୀରମାଦ୍ୟଂ ଖଳୁ ଧର୍ମ ସାଧନମ୍ । " (ଆଗ ସୁସ୍ଥ ଦେହ, ତା'ପରେ ବାକି ସବୁ କାମଦାମ) । ଓଡିଆରେ କୁହାଯାଏ ଯେ " ସ୍ୱାସ୍ଥ୍ୟ ହିଁ ସମ୍ପଦ । " ସ୍ୱାସ୍ଥ୍ୟକୁ ଜଗି ଚଳିବା ପାଇଁ ଔଷଧ ବା

ଡାକ୍ତରଙ୍କ ଅପେକ୍ଷା ସୁଷମ ଖାଦ୍ୟ ହିଁ ସବୁଠୁ ଦରକାରୀ । ତେଣୁ କୁହାଯାଏ ଯେ, " ସୁଷମ ଖାଦ୍ୟ ହିଁ, ଆମ ପାଇଁ ଡାକ୍ତର ଓ ଔଷଧ । " ଜଣେ ଖିଆ, ପିଆକୁ ଜଗି ଚଳିଲେ ଡାକ୍ତରଖାନାକୁ ଦଉଡିବାକୁ ପଡିବନି । ଜଣେ ସାଧାରଣ ମଣିଷ ଅପେକ୍ଷା ସେ ଯଥେଷ୍ଟ ବେଶୀ କାମ କରିଇଁ ପାରିବ ।

## କେଉଁ ଖାଦ୍ୟର ତାକତ କେତେ ?

| ଖାଦ୍ୟ | ଶ୍ୱେତସାର (ଗ୍ରାମ) | ସ୍ନେହସାର (ଗ୍ରାମ) | ପୁଷ୍ଟିସାର (ଗ୍ରାମ) | ଜୀବସାର (ଗ୍ରାମ) | ଧାତୁସାର (ଗ୍ରାମ) | ଶକ୍ତି କାଲୋରୀ |
|---|---|---|---|---|---|---|
| ଉଷୁନା ଚାଉଳ | ୮୦ | .୫ | ୭ | .୦୦୩ | .୦୦୧ | ୩୪୫ |
| ଅଟା | ୭୦ | ୧.୭ | ୧୨ | .୦୫୨ | .୦୦୬ | ୩୪୧ |
| ହରଡ ଡାଲି | ୬୦ | ୨.୦ | ୨୨ | .୨୩ | .୦୦୮ | ୩୫୫ |
| ଶାଗ | ୩ | .୭ | ୨ | ୯.୩ | .୦୮ | ୨୬ |
| ଆଳୁ | ୨୩ | .୧ | ୨ | .୬ | .୦୦୧ | ୯୭ |
| ସଜନା ଛୁଇଁ | ୪ | .୧ | ୩ | .୩ | .୦୦୪ | ୨୬ |
| ପିଚୁଲି | ୧୧ | .୩ | .୯ | .୨ | .୦୦୫ | ୫୧ |
| ଟମାଟ | ୪ | .୨ | .୯ | .୬ | .୦୦୫ | ୨୦ |
| କଖାରୁ | ୫ | .୧ | ୧.୪ | .୦୦୯ | .୦୦୧ | ୨୫ |
| କୁକୁଡା ଅଣ୍ଡା | ୦ | ୧୩.୩ | ୧୩.୩ | ୨ | .୦୦୬ | ୧୭୩ |
| ଗାଈ କ୍ଷୀର | ୪.୪ | ୪.୧ | ୩.୨ | .୨ | .୧ | ୬୭ |
| ମାଛ | ୪.୫ | ୧.୬ | ୧୯ | .୦୦୭ | .୩ | ୧୦୮ |

ଅଧିକାଂଶ ଲୋକ ଭାବନ୍ତି, ମାଛ, ମାଂସ, ଅଣ୍ଡାରେ ହିଁ ବେଶୀ ବଳ ମିଳେ । ଆଜିକାଲି ଏ ସବୁର ଦାମ ଯଥେଷ୍ଟ ବେଶୀ । କିନ୍ତୁ ବାଡି ବଗିଚାର ଡାଲି, ପରିବାରୁ ମଧ ଯଥେଷ୍ଟ ବଳ ମିଳି ପାରିବ । କମ୍ ଖର୍ଚ୍ଚରେ ନିଜେ ଜଣେ ଏ ସବୁ ଉପୁଜାଇ ପାରିବ । କମ୍ ସାର ଦେଇ ଚାଷ କଲେ ଏହାର ଖାଦ୍ୟ ମୂଲ୍ୟ ବେଶୀ ହୋଇଥାଏ ଓ ରୋଗର କମ୍ ସମ୍ଭାବନା ଥାଏ ।

## ରୋଗ

ଆଗରୁ ଆମେ କାରଣ ବିଷୟରେ ଆଲୋଚନା କରିଛେ । ଖାଦ୍ୟର ମାନକୁ ନେଇ ଅନେକ ରୋଗ ହୋଇଥାଏ । ଏଥିରୁ କେତେକ ଜଣାଶୁଣା ରୋଗ ବିଷୟରେ

ଆଲୋଚନା କରିବା । ଏ ଭିତରୁ କିଛି ରୋଗ ହେଉଛି-ମନ୍ଦ ପୁଷ୍ଟି(ପୁଷ୍ଟିସାର ଅଭାବ), କ୍ଷୟରୋଗ(ଶ୍ୱେତସାର ଶକ୍ତି ଅଭାବ), ଅନ୍ଧାରକଣା (ଜୀବସାର କ ଅଭାବ), ରକ୍ତ ହୀନତା (ଲୁହା ଅଭାବ), ଅସ୍ଥି ବିକୃତି (ଜୀବସାର-ଘ ଓ ଚୂନ ଅଭାବ), ବେରି-ବେରି (ଜୀବସାର ଖ୧ ଅଭାବ) ଓ ସ୍କର୍ଭି (ଜୀବସାର-ଗ ଅଭାବ) ।

## ମନ୍ଦ ପୁଷ୍ଟି (କ୍ୱାସିଓର୍କର)

ପୁଷ୍ଟିସାର ଦ୍ୱାରା ଦେହ ଓ ମନର ବିକାଶ ହୋଇଥାଏ । ଏହାଛଡା ଯେଉଁ ଶକ୍ତି କାମରେ ଲାଗିଯାଏ, ପୁଷ୍ଟିସାର ତାହାର ଭରଣା କରିଥାଏ । ପୁଷ୍ଟିସାର କମିଗଲେ ଏହି ଉଭୟ କାମରେ ଅସୁବିଧା ଦେଖାଦିଏ ।



**ଲକ୍ଷଣ :**

- ପିଲାଟିର ଦେହରେ ପାଣି ଜମିବାକୁ ଆରମ୍ଭ କରେ । ତେଣୁ ସେ ମୋଟା ହେବାରେ ଲାଗେ । ପ୍ରଥମେ ହାତ ଓ ପାଦର ଆଙ୍ଗୁଠିରେ ଆରମ୍ଭ ହୋଇ ମୁହଁ ଓ ଦେହସାରା ଫୁଲିବାରେ ଲାଗେ ।

- ବାଳ ରଙ୍ଗ ଧୀରେ ଧୀରେ କହରା ପଡିଯାଏ । ସହଜରେ ଭାଙ୍ଗିବାକୁ ଆରମ୍ଭ କରେ
- ପିଲାଟି ମାନ୍ଦା ଜଣାପଡେ । ଚିଡି ଚିଡି ହୁଏ ।
- ଚମଡା ନାଲିଆ ଦେଖାଯାଏ । ଚମଡାର ଚିକ୍କଣତା କମିଯାଏ । ଦେହରେ ଛୋଟ ଛୋଟ ଛାପ ଦେଖାଦିଏ ।
- ଭୋକ ମରିଯାଏ । ସେ ରୋଗିଣା ଦେଖାଯାଏ । ଲଗାତାର କାନ୍ଦେ ।
- ଦେହର ଓଜନ କମିଯାଏ ।
- ପିଲାଟିର ମାନସିକ ବିକାଶ ବାଧା ପାଏ । ଏହାକୁ ମାପି ହୁଏ ନାହିଁ, କିନ୍ତୁ ସେ ମାନସିକ ଦିଗରୁ ମାନ୍ଦା ଜଣା ପଡେ ।

## *ଏହାର ଚିକିତ୍ସା ଓ ପ୍ରତିଷେଧ*

ପିଲାଟିକୁ ଅଧିକ ପରିମାଣରେ ପୁଷ୍ଟିସାର ଖାଇବାକୁ ଦିଆଯାଏ । କ୍ଷୀର ଓ କ୍ଷୀର ଜାତ ଖାଦ୍ୟ, ଭୂଇଁ ଚଣା, ବୁଟ, ମଟର, ମାଂସ, ଅଣ୍ଡା, ମାଛ ଆଦି ଦରକାର ହୁଏ । ଛୁଆ ସାନ ଥିଲେ ମା' ଦୁଧ ସହ ଅନ୍ୟାନ୍ୟ ପୁଷ୍ଟିକର ଖାଦ୍ୟ ମିଶାଇ ଦିଆଯାଏ ।

ଏହି ରୋଗଟିରେ ହାତ ଗୋଡ, ପେଟ ଆଦି ଦେହର ଉପରି ଭାଗ ଫୁଲି ଥିବାର ଜଣାପଡେ । ଦେହ ଭିତରେ ମଧ୍ୟ ଯକୃତ ଆଦି ଅଙ୍ଗରେ ପାଣି ଜମିଯାଏ । ଏହି ପ୍ରକାରର ମନ୍ଦ ପୁଷ୍ଟିକୁ 'ଓଦା ମନ୍ଦ ପୁଷ୍ଟି' କୁହା ଯାଇଥାଏ ।

## କ୍ଷୟ ରୋଗ *(ମାରାସ୍‌ମସ୍)*

ପିଲାଟି ଖାଇବାକୁ ଯଥେଷ୍ଟ ଖାଦ୍ୟ ନ ପାଇଲେ ତା ଦେହ ଠିକ୍ ଭାବେ ବଢି ପାରେ ନାହିଁ । ଦେହଟି ଯଥେଷ୍ଟ ଶକ୍ତି ପାଏ ନାହିଁ । ଶକ୍ତିକୁ ଆଧାର କରି ଚାଲୁଥିବା ଦେହର ବିଭିନ୍ନ ବାହାର ଓ ଭିତର କାମ ବାଧା ପାଏ । ଫଳରେ ସେ ଶୁଖିବାକୁ ଆରମ୍ଭ କରେ । ଦେହଟି ତାର କଙ୍କାଳ ପରିକା ହୋଇଯାଏ । କିନ୍ତୁ ପେଟଟି ଫୁଲିଯାଏ । ଏହାକୁ ଶୁଖିଲା ପ୍ରକାରର ମନ୍ଦ ପୁଷ୍ଟି ବୋଲି ମଧ୍ୟ କୁହାଯାଏ ।



**ଲକ୍ଷଣ :**

- ପିଲାଟିର ଓଜନ ହାରାହାରି ଓଜନ ଠାରୁ ଯଥେଷ୍ଟ କମିଯାଏ ।
- ପିଲାଟି ଶୁଖିଯାଏ ।
- ମାଂସପେଶୀଗୁଡ଼ିକ ବଢ଼ିପାରେ ନାହିଁ । ନଷ୍ଟ ହୋଇଯାଏ ।
- ପିଲାଟିକୁ ଚାରିପାଖର କିଛି ବି ଜିନିଷ ଭଲ ଲାଗେ ନାହିଁ ।
- ଚମ ଶୁଖିଯାଇ ମୋଡ଼ି ମୋଡ଼ି ହୋଇଯାଏ ।
- ପିଲାଟି ଚିଡ଼ି ଚିଡ଼ି ହୁଏ । ତାକୁ ଆମାଶୟ ରୋଗ ଧରିବାର ସମ୍ଭାବନା ଥାଏ ।

## ଚିକିତ୍ସା ଓ ରୋଗ ପ୍ରତିଷେଧ

- ସାନ ଛୁଆ ହୋଇଥିଲେ ସେ ୪ରୁ ୬ମାସ ଯାଏଁ ମା' କ୍ଷୀର ପିଇବ । ୬ମାସ ପରେ ମା' କ୍ଷୀର ସହିତ ଅନ୍ୟ ଖାଦ୍ୟ ଦରକାର ହେବ ।
- ୪ମାସ ବେଳକୁ ମା' କ୍ଷୀର ସହିତ ଅନ୍ୟ ଖାଦ୍ୟ ମଧ ଖୁଆଇବାକୁ ଦିଆଯିବ ।
- ଗାଁର ଅଙ୍ଗନ ବାଡ଼ି ବା ସ୍ୱାସ୍ଥ୍ୟ କେନ୍ଦ୍ରକୁ ନେଇ ପ୍ରତି ମାସରେ ପିଲାର ଓଜନ ମପାଯିବ । ବୟସ ସହ ସେ ଠିକ୍ ବଢୁଛି ନା ନାହିଁ ଦେଖାଯିବ ।
- ପିଲାଟିକୁ ଖଜୁରୀଗୁଡ଼, ଚିନି, ଆଖୁଗୁଡ଼, ଆଳୁ, କନ୍ଦମୂଳ, ଗହମ, ମକା, ବାଜରା, ଘିଅ, ତେଲ ଆଦିରେ ତିଆରି ଖାଦ୍ୟ ଦିଆଯିବ ।
- ପିଲାଟିକୁ ଦିନରେ ୬-୭ ଥର ବାରମ୍ବାର ଖୁଆଇବାକୁ ପଡ଼ିବ ।
- ଏହା ସହିତ ଦେହରେ ଅନ୍ୟ କୌଣସି ଅସୁବିଧା ଥିଲେ ଡାକ୍ତରଙ୍କୁ ଦେଖାଇବାକୁ ହେବ ।

ଏହି ରୋଗଟିର ମୂଳ କାରଣ ହେଉଛି ଖାଦ୍ୟରେ ଶ୍ୱେତସାର, ଚର୍ବିର ଅଭାବ । ତେଣୁ ପିଲାବେଳୁ ସୁଷମ ଖାଦ୍ୟ ଦେଇ ପିଲାଙ୍କୁ ଏହିରୋଗଠାରୁ ଦୂରେଇ ରଖିବାକୁ ହେବ ।



## ଜୀବସାର ଓ ରୋଗ

କୌଣସି ଖାଦ୍ୟରେ କେବଳ ଜୀବସାର ହିଁ ନଥାଏ । ଖାଦ୍ୟସାର ସହିତ ଏହା କିଛି ପରିମାଣରେ ମିଶି ରହିଥାଏ । କିନ୍ତୁ ଆମେ ଏହାର ଦରକାରୀ ଗୁଣକୁ ଜାଣି ନଥାନ୍ତି । ଆମେ ରୋଷେଇ ବେଳେ ଅନେକ ଦରକାରୀ ଜୀବସାର ଓ ଧାତୁସାରକୁ ନଷ୍ଟ କରି ଦିଅନ୍ତି । ମୋଟ ଉପରେ ଚାରି ପ୍ରକାରର ଜୀବସାର (କ, ଖ, ଗ ଓ ଘ) ଅଧିକ ଦରକାର ହୋଇଥାଏ । ଏହାର ପରିମାଣ କମିଗଲେ ଅନେକ ବିପଦଜନକ ରୋଗ ଦେଖାଦିଏ ।

## ଅନ୍ଧାରକଣା

ଖାଦ୍ୟରେ ଜୀବସାର୍-କ କମିଗଲେ ଲୋକଟିର ଆଖିର କ୍ଷମତା କମିଯାଏ । ଅନ୍ଧାରୁଆ ଜାଗାରେ ସେ କିଛି ଦେଖିପାରେ ନାହିଁ । ଏହା ଆରମ୍ଭ ହେବା ପରେ ପରେ ଔଷଧ ଖୁଆଇବାକୁ ପଡେ । ଏଥିରେ ଅବହେଳା କଲେ ଲୋକଟି ପୂରା ଅନ୍ଧ ହୋଇଯାଇ ପାରେ । ଆଖି ପାଇଁ ଜୀବସାର-'କ' ର ଏକ ବଡ଼ ଭୂମିକା ରହିଛି । ଏହା ଦେହର ଚମ ଓ ବାଳକୁ ବି ସୁସ୍ଥ ରଖେ ।

**ଜୀବସାର - କ ଅଭାବର ଲକ୍ଷଣ :**

- ଏହା ୨ରୁ ୫ ବର୍ଷର ପିଲାଙ୍କ ଠାରେ ବେଶୀ ଦେଖାଦିଏ ।
- ଆରମ୍ଭରେ ପିଲାଟି ରାତି ବା ଅନ୍ଧାରରେ ଦେଖିପାରେ ନାହିଁ ।
- ଆଖିଟି ଫିକା ପଡିବାରେ ଲାଗେ ଓ ଆଖିର ଧଳା ଅଂଶ ମୋଡି ମୋଡି ହେବାକୁ ଆରମ୍ଭ କରେ ।
- ଆଖିର ଧଳା ଅଂଶରେ ଗୋଟିଏ ତିନି କୋଣିଆ ଜାଗାରେ ମଇଳା ରଙ୍ଗର ଛୋଟ ଛୋଟ ଫୋଟକା ଥିବାର ଦେଖାଯାଏ ।
- ଏହି ଅବସ୍ଥାରେ ଯତ୍ନ ଓ ଚିକିତ୍ସା ଲୋଡା ହୁଏ । ଏଥିରେ ଅବହେଳା କଲେ ପୂରା ଆଖିଟି ନଷ୍ଟ ହୋଇଯିବାର ସମ୍ଭାବନା ଦେଖାଦିଏ ।
- ଆଖିପୁଅଟି ଫିକା ଜଣା ପଡେ ଓ ଏଥିରେ ଅତି ଛୋଟ ଖାଲ ଦେଖାଦିଏ ।
- ଆଖିପୁଅ ନରମ ହୋଇ ରକ୍ତ ପରି ନାଲିଆ ଦେଖାଯାଏ ଓ ଅଧିକ ହେଲେ ଏହା ଫୁଟି ଯାଇଥାଏ । ଏଥିରେ ଆଖି ଜମା କାଟେ ନାହିଁ କିନ୍ତୁ ପିଲାଟି ଅନ୍ଧ ହୋଇଯାଏ ।

***ଏହାର ଚିକିତ୍ସା ଓ ପ୍ରତିକାର :***

ଗାଁ ଅଙ୍ଗନବାଡି କେନ୍ଦ୍ରରେ ୧ ରୁ ୫ ବର୍ଷର ଛୁଆଙ୍କୁ ପ୍ରତି ୬ ମାସରେ ଜୀବସାର-କ ଟୋପା ବା ବଟିକା ମାଗଣାରେ ଦିଆଯାଏ । ଏହା ପିଲାଙ୍କୁ ନିୟମିତ ଖୁଆଯିବା ଦରକାର । କାରଣ ୨ରୁ ୫ ବର୍ଷର ପିଲାଙ୍କୁ ଅନ୍ଧାରକଣା ହୋଇଥାଏ । ଏହା ସହିତ ଜଗିରଖି ଖିଆପିଆ କରିବାକୁ ପଡେ ।

ବିଶେଷ କରି, ହଳଦିଆ ଓ ନାରଙ୍ଗୀ ରଙ୍ଗର ଫଳ ଓ ପରିବା (କଖାରୁ, ପାଚିଲା ଅମୃତଭଣ୍ଡା, ଆମ୍ବ, ଗାଜର, ଟମାଟ), ଶାଗ ଜାତୀୟ ପରିବା (ସଜନା, ମୂଳା, ବନ୍ଧାକୋବି ଓ ଅନ୍ୟ ଶାଗ) ଓ କ୍ଷୀରଜାତ ଖାଦ୍ୟ ଖୁଆଯିବା ଦରକାର । ଏଥିରେ ବେଶୀ ପରିମାଣର ଜୀବସାର-କ ଥାଏ ।

## ଜୀବସାର ଖ୧, ଖ୨, ଖ୬ ଓ ଖ୧୨ ଅଭାବ

| ଜୀବସାର | କେଉଁଠି ଥାଏ | ଅଭାବରୁ ରୋଗ | ଲକ୍ଷଣ |
|---|---|---|---|
| ଜୀବସାର ଖ୧ | ଧାନ, ଗହମ, ଡାଲି ଜାତିର ଶସ୍ୟ, ତେଲ ଥିବା ମଞ୍ଜି, | ବେରି ବେରି | ଭୋକ ମରିଯାଏ, ବଦହଜମି ହୁଏ । ଦେହ ଓଜନିଆ ଲାଗେ, ଗୋଡର ବଳ କମିଯାଏ । |
| ଜୀବସାର ଖ୨ | କଳିଜା, ଭୂଇଁଚଣା, ଧାନ ଜାତିର ଶସ୍ୟ, ଡାଲି ଜାତିର ଶସ୍ୟ, ମାଂସ, ମାଛ, କ୍ଷୀର, ଅଣ୍ଡା, ପରିବା । | ଚମରୋଗ (ପେଲାଗ୍ରା) | ଚମରୋଗ, ଅମାଶୟ, କେଉଁଠି ବି ମନ ଲାଗେ ନାହିଁ, ପାଟିରେ ଘା ହୁଏ । |
| ଜୀବସାର ଖ ୧୨ | ଛଣ୍ଟୁନା ଚାଉଳ, କଲିଜା, ଧାନ ଜାତିର ଶସ୍ୟ, ତେଲ ମଞ୍ଜି, ଅଣ୍ଡା, କ୍ଷୀର, ମାଛ, ମାଂସ । | ସାଂଘାତିକ ରକ୍ତହୀନତା | ଜିଭରେ ଜଳାପୋଡା ହୁଏ, ଧୀରେ ଧୀରେ ଆଖି, ନାକ, ପାଟିରେ ଚମ ଧଳା ହୋଇଯାଏ । |

### ଏହାର ଚିକିତ୍ସା ଓ ପ୍ରତିକାର

- ଉପରେ ଲେଖା ଯାଇଥିବା ଖାଦ୍ୟ ପ୍ରତିଦିନ କିଛି କିଛି ଖାଇବା ଦରକାର ।
- ଖାଦ୍ୟକୁ ବେଶୀ ସିଝାଇଲେ ଜୀବସାର ନଷ୍ଟ ହୋଇଯାଏ । ଏହାକୁ ସାଇତି ରଖିବା ପାଇଁ କେତେକ ଖାଦ୍ୟ ରକ୍ଷା ନିୟମ ମାନିବାକୁ ହେବ ।
- ଅକାଣ୍ଡିଆ ଚାଉଳ ଖାଇବା ଦେହ ପାଇଁ ଭଲ ।

- ଚାଲୁଣିରେ ଚଲାଅ ଗହମର ଚୋପାକୁ ଅଲଗା କରିବା ଉଚିତ ନୁହେଁ ।
- ଚାଉଳକୁ ବେଶୀ ଧୋଇବା ଉଚିତ ନୁହେଁ ।
- ଭାତକୁ ନ ଗାଳି ପେଜ ସହିତ ଖାଇବା ଉଚିତ ।
- ପରିବାକୁ କାଟିବା ଆଗରୁ ଧୋଇ ଦେଇ କାଟିବା ଉଚିତ ।
- ପ୍ରତିଦିନ ତଟକା ପରିବା ଖାଇବା ଉଚିତ ।
- ପ୍ରତିଦିନ କିଛି କାକୁଡି, ଟମାଟ, ମୂଳା, ବନ୍ଧାକୋବି, ପିଆଜ, ପିଜୁଳି, ଆଦି ଫଳ ପରିବା କଞ୍ଚା ଚୋବାଇ ଖାଇବା ଉଚିତ ।

### ଜୀବସାର - ଗ ଅଭାବ

ଜୀବସାର-ଗ ଆମ ଦେହରେ କେତେକ ଦରକାରୀ କାମ କରିଥାଏ ।

- ଏହା ଘା' ଶୁଖାଇବାରେ ସାହାଯ୍ୟ କରେ ।
- ସଜନା ଛୁଇଁ, ଶାଗ, ଆଦିରୁ ଲୁହାକୁ ଶୋଷି ନେବାରେ ସାହାଯ୍ୟ କରେ ।
- ଏହା ଆମ ଦେହରେ ଥିବା ରକ୍ତର କଣିକାଗୁଡିକର ଯତ୍ନ ନିଏ । ଆମ ଦେହରେ ଜୀବସାର - ଗ ର ପରିମାଣ କମିଗଲେ ଆମକୁ ସ୍କର୍ଭି ରୋଗ ହୋଇଥାଏ । ଏହା ଅଭାବ ହେଲେ ଦେହରେ କେତେକ ଲକ୍ଷଣ ଦେଖାଦିଏ ।
- ଚମ ମୋଟା ଓ ଖଦଡିଆ ଲାଗେ ।
- ମାଢି ମୂଳରୁ ରକ୍ତ ବୁହେ, ମାଢି ମୂଳ ଫୁଲିଯାଏ ଓ ଲାଲ ଅଠାଳିଆ ମନେ ହୁଏ ।
- ହାତ ସନ୍ଧିଗୁଡିକ ଘୋଳେଇ ହୁଏ ।
- ମାତ୍ର ୩୫-୪୦ ବର୍ଷ ବୟସ ବେଳକୁ ଦାନ୍ତ ପଡିଯାଏ ।

### ଚିକିତ୍ସା ଓ ପ୍ରତିକାର :

- ଲେମ୍ବୁ, ଅଁଳା, କମଳା, ପିଜୁଳି, ତଟକା ସବୁଜ-ପରିବା ଆଦିରେ ଜୀବସାର -ଗ ଥାଏ । ଏଗୁଡିକୁ ବେଶୀ ପରିମାଣରେ ଖାଇବା ଉଚିତ । ଖାଦ୍ୟରେ ବେଶୀ ଜୀବସାର -ଗ ଥାଏ । ତେଣୁ ନିତିଦିନିଆ ଖାଦ୍ୟରେ ଏହାର ପରିମାଣ ବଢାଯିବା ଦରକାର ।



- ଖାଦ୍ୟକୁ ବେଶୀ ସମୟ ଚୁଲିରେ ବସାଇଲେ ଜୀବସାର ନଷ୍ଟ ହୋଇଯାଏ । ତେଣୁ ଏହାକୁ ଯଥା କମ୍ ସମୟ ଚୁଲିରେ ବସାଇବା ଭଲ । ଅନେକ ପରିବାକୁ କଞ୍ଚା ଖିଆ ଯାଇପାରେ । ସର୍ବୋଦୟ ନେତା ବିନୋବା ଭାବେ ୱାର୍ଦ୍ଧା ଆଶ୍ରମରେ ଏ ବିଷୟରେ ଏକ ପ୍ରୟୋଗ କରିଥିଲେ । ସବୁ ପ୍ରକାରର ପରିବାଗୁଡିକୁ ସଫା କରି କଞ୍ଚା ଖାଇବାକୁ ଆରମ୍ଭ କରିଥିଲେ । ଏହା ସମ୍ଭବ ହୋଇ ପାରିଲା ନାହିଁ । ତେଣୁ ସେମାନେ ଠିକ୍ କଲେ ଯେ କାକୁଡି, ଟମାଟ, ମୂଳା, ଗାଜର ଆଦି ପରିବାକୁ ହିଁ କଞ୍ଚା ଖିଆଯିବା ଭଲ ।

***ଜୀବସାର - ଘ ଅଭାବ :***

ଦେହକୁ ମଜବୁତ କରିବାରେ ଜୀବସାର - ଘ ଓ ଚୂନର (କାଲସିଅମ୍) ଏକ ବଡ଼ ଭୂମିକା ଥାଏ ।

- ଏହା ହାଡକୁ ଟାଣ କରେ ।
- ଚୂନ (କାଲ୍‌ସିଅମ୍) ଆଦି ଧାତୁ ଦାନ୍ତକୁ ମଜବୁତ୍ କରେ ।
- ରକ୍ତ ଜମାଟ ବାନ୍ଧିବା, ମାଂସପେଶୀ ସଙ୍କୋଚନ ଆଦି କାମ ପାଇଁ ସାହାଯ୍ୟ କରିଥାଏ ।

ଚୂନର ପରିମାଣ କମିଗଲେ ରିକେଟ୍‌ସ୍ (ହାଡ ବଙ୍କା) ରୋଗ ଧରେ । ଏହାର କେତେକ ମୂଳ ଲକ୍ଷଣ ହେଉଛି :-

- ପିଲାର ହାଡ ସବୁ ନରମ ହୋଇ ବଙ୍କେଇ ଯାଏ ।
- ଗଣ୍ଠିଗୁଡିକ ଫୁଲିଯାଏ ।
- ପଞ୍ଜରା ହାଡରେ କେତେକ ଫୁଲା ଦେଖାଦିଏ ଓ ହାଡଟି ବାହାରକୁ ଫୁଟି ଥିଲା ଭଳି ଦେଖାଯାଏ ।
- ବୟସ୍କ ଗର୍ଭିଣୀ ମହିଳାଙ୍କର ଚୂନ ଅଭାବ ଥିଲେ ତାଙ୍କର ଝିଅ ଛୁଆଙ୍କ ଦେହ ହାଡ ମଧ୍ୟ ଦୁର୍ବଳ ହୋଇଯାଏ ।

***ଚିକିତ୍ସା ଓ ପ୍ରତିକାର :***

- ସୂର୍ଯ୍ୟ କିରଣ ଦେହରେ ପଡିଲେ ଚମ ଜୀବସାର-ଘ ତିଆରି କରିଥାଏ । ତେଲ, କଦଳୀ, କ୍ଷୀର, ଚହ୍ଲା ଆଦିରୁ ମଧ୍ୟ ଜୀବସାର-ଘ ମିଳିପାରେ । ତେଣୁ ଖାଦ୍ୟରେ ଏଥିରୁ କିଛି ପରିମାଣ ରହିବା ଉଚିତ ।

ଏଗୁଡିକ ଛଡା ଖାଦ୍ୟରେ ଜୀବସାର - ଙ(E) ଓ ଜୀବସାର-ଟ(K) ର ମଧ୍ୟ ଆବଶ୍ୟକତା ଥାଏ ।

ଜୀବସାର-ଘ ପରି ଜୀବସାର-ଟ ଆମର ରକ୍ତ ଜମାଟ ବାନ୍ଧିବାରେ ସାହାଯ୍ୟ କରେ । ଏହାର ପରିମାଣ କମିଗଲେ କ୍ଷତ ଜାଗାରୁ ଅଧିକ ରକ୍ତ ବୋହିଯାଏ । ମହିଳାମାନେ ଗର୍ଭବତୀ ହେବାରେ ଜୀବସାର-ଙ ସାହାଯ୍ୟ କରେ ।

## ଧାତୁସାର

ଆ[illegible] ଲୁହା ଧାତୁ ଦରକାର ହୁଏ । ଆମର ରକ୍ତରେ ଥିଲା ଲାଲ୍ ରକ୍ତ କଣିକା ତିଆରି ପାଇଁ ଲୁହା ଲୋଡା ହୁଏ । ଲୁହା ଥିବା ଯୋଗୁଁ ଏହାର ରଙ୍ଗ ଗାଢ ଲାଲ୍ ହୁଏ । ଲାଲ୍ ରକ୍ତ କଣିକା ଅମ୍ଳଜାନକୁ ବୋହି ନେଇ ଦେହର ବିଭିନ୍ନ ଅଙ୍ଗରେ ପହଞ୍ଚାଇ ଥାଏ । ଏଥିରେ ଲୁହା କମିଗଲେ ଏହାର କାମ କରିବା କ୍ଷମତା କମିଯାଏ ଓ ଦେହରେ ନା ନା ଅସୁବିଧା ଦେଖାଦିଏ । ରକ୍ତହୀନତା ଏଥିରୁ ଏକ ଜଣାଶୁଣା ରୋଗ ।

**ରକ୍ତହୀନତାର ଲକ୍ଷଣ :**

- ଦେହର ଚମ ମଇଳା ଦେଖାଯାଏ ।
- ନଖ, ଜିଭ, ଓଠ ଓ ଆଖିପତାର ଭିତର ପାଖ ନାଲିଆ ବଦଳରେ ଧଳା ବା ଶେତା ପଡିଯାଏ ।
- ଛୋଟ ପିଲାମାନେ ଠିକ୍ ଭାବେ ବଢନ୍ତି ନାହିଁ । ରୋଗିଣା ହୋଇଯାଆନ୍ତି ।
- କମ୍ ପରିଶ୍ରମରେ ଲୋକଟି ଶୀଘ୍ର ଥକି ଯାଏ । ମୁଣ୍ଡ ବୁଲାଏ । ଧଇଁ ସଇଁ ଲାଗେ, ଭୋକ କମି ଯାଏ, କାମରେ ମନ ଲାଗେନାହିଁ, ଛାତି କାଟେ, ଧଡ ଧଡ ହୁଏ । ପାଦ, ପାପୁଲି ଓ ସାରା ଦେହ ଝାଳେଇ ଯାଏ ।

ଆମ ଦେଶରେ ଏହା ଏକ ବଡ଼ ଚିନ୍ତାର ବିଷୟ । ଭାରତ ସାରା ରକ୍ତହୀନତା ଦେଖାଯାଏ । ବିଶେଷ କରି, ଗରିବ ଲୋକ ଓ ମହିଳାମାନେ ବେଶୀ ଏହି ଅସୁବିଧାରେ ପଡନ୍ତି । ଶହେରେ ୮୫ ଜଣ ମହିନାଙ୍କ ଠାରେ ରକ୍ତହୀନତା ଦେଖିବାକୁ ମିଳୁଛି ।



**ମହିଳାଙ୍କ ମଧ୍ୟରେ ରକ୍ତ ହୀନତାର ପ୍ରଭାବ :**

- ଦେହର ରୋଗ ପ୍ରତିରୋଧକ କ୍ଷମତା କମିଯାଏ । ତେଣୁ ସେମାନେ ସହଜରେ ନାନା ରୋଗରେ ପଡନ୍ତି ।
- ତାଙ୍କୁ ଚାରିପାଖରେ କୌଣସି ଜିନିଷ କିମ୍ବା କାମ ଭଲ ଲାଗେ ନାହିଁ ।

ସେମାନେ ବେଶୀ ଚିଡି ଚିଡି ହୁଅନ୍ତି ।

- ତାଙ୍କର ପ୍ରଜନନ ବ୍ୟବସ୍ଥାଟି ଅନେକ ବାଧା ପାଏ ।
- ଗର୍ଭ ଧାରଣ ବେଳେ ବି ଦେହରୁ ରକତ ଯାଏ ।
- ଛୁଆ ଜନ୍ମ ବେଳେ ଦେହରୁ ବହୁତ ରକ୍ତ ଚାଲି ଯାଏ ।
- ଯୋନିରେ ସଂକ୍ରମଣ ହେତୁ କଷ୍ଟ ହୁଏ ।
- ସମୟ ଆଗରୁ ଛୁଆ ଜନ୍ମ ହୋଇଯାଏ ।
- ବେଳେ ବେଳ ଛୁଆକୁ ଜନ୍ମ ଦେଲା ବେଳେ ମା' ମରିଯାଏ ।

**ପିଲାଙ୍କ ଉପରେ ରକ୍ତହୀନତାର ପ୍ରଭାବ :**

- ଛୁଆଟି ଜନ୍ମ ପରେ ହଲ ଚଲ ହୁଏ ନାହିଁ । ମଲା ପରି ଥାଏ । ବେଶ ସମୟ ପରେ ଏହା ହଲଚଲ ହୁଏ । ଏହାର ଓଜନ କମ୍ ଥାଏ ।
- ବେଳେବେଳେ ଛୁଆଟି ଜନ୍ମ ଆଗରୁ ମରି ଯାଇଥାଏ ବା ଜନ୍ମ ହେବାର ମାସକ ଭିତରେ ମରିଯାଏ ।
- ପିଲାଟି ବାରମ୍ବାର ରୋଗରେ ପଡେ ।
- ପିଲାଟି ଦୁର୍ବଳିଆ ଓ ଅନ୍ୟମନସ୍କ ହୁଏ । ଶ୍ରେଣୀର ଅନ୍ୟ ପିଲାଙ୍କ ଠାରୁ ପଛରେ ପଡିଯାଏ ।

**ଚିକିତ୍ସା ଓ ପ୍ରତିକାର :**

ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର, ଅଙ୍ଗନବାଡି, ଡାକ୍ତରଖାନା ଆଦି ଜାଗାରେ ମାଗଣାରେ ଲୁହା ବଟିକା ମିଳି ପାରିବ । ଦୋକାନରେ ମଧ କମ୍ ଦାମ୍‌ରେ ଏହା ମିଳେ । ମହିଳାମାନଙ୍କୁ ଦିନକୁ ତିନୋଟି କରି ତିନି ମାସ ଏହି ବଟିକା ଖାଇବାକୁ ହେବ । ଜାତୀୟ ପୋଷକ କାର୍ଯ୍ୟକ୍ରମ ଜରିଆରେ ପ୍ରତ୍ୟେକ ରକ୍ତହୀନ ମହିଳା ଓ ପିଲାଙ୍କୁ ୧୦୦ଟି ଲୁହା ବଟିକା ମାଗଣା ବଣ୍ଟା ଯାଉଛି ।

**ପ୍ରତିଷେଧ ବ୍ୟବସ୍ଥା :**

ରକ୍ତହୀନତାକୁ ରୋକିବା ପାଇଁ ଦୁଇଟି ମୂଳ କାମ ହେଉଛି :

- ଅଧିକ ଲୁହା ଓ ଜୀବସାର-ଗ ଥିବା ଖାଦ୍ୟ ଖାଇବା ।

- ମାଲେରିଆ, ଆଙ୍କୁଶ କୃମି, ମାସିକ ଋତୁ ଅସୁବିଧା ଆଦିକୁ ନିୟନ୍ତ୍ରଣ କରିବା । ଏହା ଦ୍ୱାରା ରକ୍ତହୀନତା ବଢ଼ିଥାଏ ।

### *କେଉଁ ଖାଦ୍ୟରେ ଅଧିକ ଲୁହା ଓ ଭୀଟାମିନ-ସି ଥାଏ ?*

ସାଧାରଣତଃ ତଟକା ଶାଗୁଆ ପରିବା, ଧାନ ଓ ଡାଲି ଜାତୀୟ ଶସ୍ୟରେ ଲୁହା ଥାଏ । ଆମିଷରେ ମଧ୍ୟ ଯଥେଷ୍ଟ ଲୁହା ଥାଏ । ତଳ ଖାଦ୍ୟଗୁଡ଼ିକରୁ କିଛି ପରିମାଣରେ ପ୍ରତିଦିନ ଖାଇବା ଦରକାର ।

| ପରିବା ଓ ଶାଗ | ଶସ୍ୟ | ଫେଣାଖାଦ୍ୟ | ଆମିଷ | ଅନ୍ୟାନ୍ୟ |
|---|---|---|---|---|
| ବନ୍ଧାକୋବି, ମୂଳାଶାଗ | ଗହମ | ଏଣ୍ଡୁରି | ମାଂସ | ଖଜୁରିଗୁଡ଼ |
| ଗାଜର, ବିଟ୍, ବୁଟ | ବାଜରା | ଦୋଷା | କଲିଜା | |
| ସୋରିଷ ଶାଗ, ଝୁଡଙ୍ଗ | ଯଅ | | ମାଛ | |
| କଖାରୁ ଶାଗ, ପୋଇ | ମଟର | | | |
| ଧନିଆ ପତ୍ର | | | | |
| ପିଆଜ ଶୁଣ୍ଢା | | | | |
| ମଟର ଚଣା | | | | |
| ସଜନା ଛୁଇଁ/ ଶାଗ | | | | |

## ପାଞ୍ଚଟି ମୂଳ ସାର

ଡାକ୍ତର ବାବୁଙ୍କ ଆଲୋଚନା ସରିଲା । ତାଙ୍କୁ ଧନ୍ୟବାଦ ଜଣାଇବା ପାଇଁ ଗୁରୁଜୀ ଉଠିଲେ । ସେ କହିଲେ, " ଆମେମାନେ ଚିଡ଼ିଆଖାନାରେ ନାହିଁ ନ ଥିବା ମଉଜ କରିଥିଲୁ । ସେତେବେଳେ ଆମ ନିଜ କଥା ବି ଭୁଲି ଯାଇଥିଲୁ । ନୂଆ ଦୁନିଆଁର ନୂଆ ପରଶରେ ଆମେ ଉଲୁସି ଉଠିଥିଲୁ । ଆମ ସାଙ୍ଗ ପଶୁପକ୍ଷୀ ଯାହା ଖାଉଥିଲେ, ଆମେ ବି ତାହା ଖାଇଥିଲୁ । କିନ୍ତୁ ତାହା ଆମ ପାଇଁ ଏକ ବଡ଼ ଭୁଲ ଥିଲା । ଡାକ୍ତର ବାବୁ ଆଜି ବୁଝାଇବା ପରେ ଏ କଥାଟି ଆମେ ଜାଣି ପାରିଛେ ।




ସରଳ ଭାବରେ କହିବାକୁ ଗଲେ, ଏହା ଆମ ପାଇଁ ଏକ ମନ୍ତ୍ର ପରି । ଗଛଟିଏ ବଞ୍ଚିବା ପାଇଁ ମାଟିରୁ ପାଣି ଓ ସାର ଶୋଷି ନେଇଥାଏ । ଠିକ୍ ସାର ନ ପାଇଲେ ଗଛଟି ଉଧେଇ ପାରେ ନାହିଁ । ଦରକାରୀ ସାର ପାଇଲେ ସେ ଛନ ଛନିଆ ହୋଇ ବଢିଉଠେ । ସୁସ୍ଥ ଦେଖାଯାଏ । ଆମ ଦେହ ମଧ ଗଛ ପରିକା । ଆମ ପାଇଁ ମଧ ପାଣି ଓ ସାର ଦରକାର । ଏହି ସାର ପାଞ୍ଚ ପ୍ରକାରର ।

୧. ଶ୍ୱେତସାର, ୨. ପୁଷ୍ଟିସାର, ୩. ସ୍ନେହସାର, ୪. ଜୀବସାର ଓ ୫. ଧାତୁସାର । ସବୁ ଖାଦ୍ୟରେ ଏହି ପାଞ୍ଚସାର ମିଶି ରହି ନଥାଏ । କେଉଁଥିରେ କେଉଁ ସାର ବେଶି ରହିଥାଏ । ଆମ ଦେହ ପାଇଁ ପ୍ରତ୍ୟେକ ସାରରୁ କିଛି ଦରକାର । କେଉଁ ଗୋଟାକରୁ କମ୍ ହେଲେ ଆମ ଦେହରେ ଅସୁବିଧା ଓ ରୋଗ ହୁଏ । ଆମେ ଚିଡିଆଖାନାରେ ଗୋଟିଏ ପ୍ରକାରର ଖାଦ୍ୟରୁ ପଚୁର ପରିମାଣରେ ଖାଉଲୁ । ଏଥିରେ ସବୁ ସାର ନ ଥିଲା । ତେଣୁ ଆମେ ସମସ୍ତେ ରୋଗରେ ପଡିଲୁ ।

ଆମେ ଏବେ ବୁଝିଗଲେ । ଡାକ୍ତର ବାବୁ ଆମକୁ ଆମୂଳଚୂଳ ବୁଝାଇଛନ୍ତି କେଉଁ ଖାଦ୍ୟରେ କି ସାର ଅଛି ? କେଉଁ ସାରର ଅଭାବରେ କି ରୋଗ ହୁଏ ? ରୋଗର ଲକ୍ଷଣ ସବୁ କିପରି ? ଏହାର କିପରି ଚିକିତ୍ସା କରାଯାଇପାରିବ ? କ'ଣ କଲେ ଆମକୁ ଜମା ରୋଗ ହେବ ନାହିଁ ? ଏତିକି ଜାଣି ଆମେ ସମସ୍ତେ ଜଣେ ଜଣେ ଡାକ୍ତର ହୋଇଗଲେ । ଆମ ଦେହ କିପରି ଲାଗୁଛି, କେଉଁଠି କାଟୁଛି କିମ୍ବା ଅନ୍ୟ ଅସୁବିଧା ଅଛି ଏସବୁକୁ ଆମେ ହିଁ ଭଲ ଭାବେ ଜାଣି ପାରିବା । ପ୍ରତିଦିନ ଏହି ପାଞ୍ଚସାରଙ୍କୁ ବାଛି ବାଛି ଖାଇବା । ତାହେଲେ ଆମର ଦେହ ଭଲ ରହିବ ।

ଆମେ ଭଲ ରହିବା ସହିତ ଆମ ଘରର ସମସ୍ତେ ବି ଏହାର ମୂଲ ବୁଝିବେ । ସମସ୍ତେ ଜଗି ରଖି ଚଳିବେ । ଆମେ ବଳୁଆ ହୋଇ ପାରିବା । ଅଧିକା କାମ କରି ପାରିବା, ଅଧିକା ପାଠ ଶିଖି ପାରିବା । ଦୁନିଆଁକୁ ଅଧିକା ଜାଣି ପାରିବା । ଜଣ ଜଣ ହୋଇ ସମସ୍ତଙ୍କ ଘର ଗଢି ହୋଇଗଲେ, ଗାଁଟା ହସି ଉଠିବ । ଦରକାର ବେଳେ ଡାକ୍ତର ବାବୁ ଅଛନ୍ତି ।

ଏହି ପାଞ୍ଚ ସାର ଆଜିଠୁ ଆମର ସାଙ୍ଗ । ଏମାନେ ଆମ ପାଇଁ '**ପଞ୍ଚାମୃତ**' । ଦିନେ ବି ଏମାନଙ୍କୁ ଭୁଲିବା ନାହିଁ । ଏମାନଙ୍କ ସହ ଆମକୁ ମିତ ବସାଇ ଦେଇଥିବାରୁ ଡାକ୍ତର ବାବୁଙ୍କୁ ଆମ ସମସ୍ତଙ୍କ ଧନ୍ୟ ବାଦ । ''

ଡାକ୍ତର ବାବୁ ମୁରୁକି ମୁରୁକି ହସୁଥିଲେ । ସେ ସେଦିନ ଯଥେଷ୍ଟ ଖୁସି ଥିଲେ । କାରଣ ବର୍ଷ ବର୍ଷ ଧରି ଲୋକଙ୍କୁ ବଟିକା ଦେଇ, ଚିକିତ୍ସା କରି, ସେ ଯେତିକି ଆନନ୍ଦ ପାଉଥିଲେ, ଏଥିରେ ତା'ଠୁ ବେଶୀ ଆନନ୍ଦ ଥିଲା । ଯେଉଁ ଲୋକମାନେ ଡାକ୍ତରଖାନାକୁ ଆସିଥାନ୍ତି, ସେମାନେ କେବଳ ଡାକ୍ତରଙ୍କୁ ହିଁ ଚାହାନ୍ତି । ନିଜ ଦେହ ବିଷୟରେ କିଛି ଜାଣି ନଥାନ୍ତି । ଦେହ ଖରାପ ହୋଇ କଷ୍ଟ ହେଲେ ହିଁ ଡାକ୍ତର ବାବୁ ମନେ ପଡନ୍ତି । ପୁଣି ଔଷଧ କ'ଣ ଜାଣି ନଥିବାରୁ ଏହାକୁ ଖାଇବାରେ ଅନେକ ଅବହେଳା କରନ୍ତି ।

ଆଜି କିନ୍ତୁ ଅନୁଭୂତିଟି ଅଲଗା ଥିଲା । ସେ ଗାଁଟା ଯାକର ପିଲା ଓ ବଡ଼ଙ୍କୁ ଡାକ୍ତରୀର ମୂଳ କଥାଟି ଶିଖାଇଛନ୍ତି । ଦେହକୁ ଜଗିବାର ବାଟଟା ବଢେଇଛନ୍ତି । ଏତିକି ଜାଣିବା ଲୋକ ନିଜେ ନିଜର କାମଚଳା ଡାକ୍ତର । ସେ ବୁଝିପାରିବ, ତା'ର ଅସୁବିଧାଟା କେଉଁଠି ଓ ବାଟଟା କ'ଣ ? ବିଶେଷକରି, ପିଲାଏ ଶିଖିଗଲେ ଶିକ୍ଷାର




ପ୍ରଭାବଟି ବହୁତ ଭଲ ପଡିବ । ସେମାନେ କୌତୂହଳୀ, ଚଞ୍ଚଳ ଓ ବିଶ୍ୱାସୀ । ବଡଙ୍କ ପରି ମାନ୍ଦା ନୁହନ୍ତି । ପିଲା ବେଳର ଏହି ଟାଣୁଆ ମୂଳଦୁଆଟି ଏକ ମଜବୁତ୍ ଘର ଓ ସମାଜ ତୋଳି ପାରିବ ।

ପ୍ରବାଦଟିଏ ଅଛି - '' ଯଦି ତୁମେ କାହାକୁ ଦି'ଟା ମାଛ ଦିଅ, ତେବେ ସେ ଅତି ବେଶୀରେ ଦିନେ ହିଁ ମାଛ ଖାଇବ । କିନ୍ତୁ ତା'କୁ ମାଛ ଧରିବାଟା ଶିଖାଇ ଦେଲେ ସେ ଜୀବନ ସାରା ମାଛ ଖାଉଥିବ । ''

ଡାକ୍ତର ବାବୁଙ୍କର ଏ କଥାଟି ମନେ ଥିଲା । ସେ ଡାକ୍ତରଖାନାରେ ଅଧିକାଂଶ ଲୋକଙ୍କର ହାତ ଧରି ବାଟ ଚଲାଇବାର ଶିଖାଉଥିଲେ । ଆଜି କିନ୍ତୁ ସେ ବାଟ ଚାଲିବାର କଳାଟି ଶିଖାଇ ଦେଲେ । ଏଥର ସେମାନେ ନିଜେ ନିଜେ ଚାଲି ପାରିବେ ଓ ଠିକ ଭାବରେ ଚାଲି ପାରିବେ । କାହାକୁ ଅନାଇ ବସିବେ ନାହିଁ ।

*ପ୍ରିୟ ବନ୍ଧୁ, ଆପଣଙ୍କ ଗାଁରେ ବି ଡାକ୍ତର ବାବୁ, ଡାକ୍ତର ମା' ଅଛନ୍ତି । ଆମେ ବି ତାଙ୍କ ସହ ଏକାଠି ବସି ଦୁଃଖ ସୁଖ ହୋଇ ପାରିବା କି ? ଏହା ହୋଇ ପାରିଲେ ଗାଁର ଅନେକ ଅସୁବିଧା ଛାଏଁ ଛାଏଁ ଚାଲି ଯାଆନ୍ତା । ନୁହେଁ ? ଆସନ୍ତୁ ଗାଁର ସଭିଏଁ ମିଳି ଗାଁର ଡାକ୍ତର ବାବୁ, ଡାକ୍ତର ମା'ଙ୍କ ପାଖରେ ଦିନେ ବସିବା ।*